# ଭୁଲିହୁଏନା

ନାଟ୍ୟକାର
ଶ୍ରୀ ଯଦୁନାଥ ଦାଶ ମହାପାତ୍ର

ଗ୍ରନ୍ଥ ମନ୍ଦିର

କଟକ-୨ : ବ୍ରହ୍ମପୁର-୨

ପ୍ରକାଶକ :
ଅଭିରାମ ମହାପାତ୍ର
ଗ୍ରନ୍ଥ ମନ୍ଦିର
କଟକ-୨ : ବ୍ରହ୍ମପୁର-୧

ମୁଦ୍ରକ :
ବୁକ ପ୍ରିଣ୍ଟର୍ସ
କଟକ-୨

ପ୍ରଥମ ମୁଦ୍ରଣ—୧୯୬୫
ଦ୍ୱିତୀୟ ମୁଦ୍ରଣ—୧୯୭୧
ତୃତୀୟ ମୁଦ୍ରଣ—୧୯୭୪

ମୂଲ୍ୟ ଟ ୪.୦୦
ବନ୍ଧେଇ ଅତିରିକ୍ତ ଟ ୧.୦୦

ଉତ୍ସର୍ଗ

ମୋ ଜୀବନ-ନାଟକର ନାୟିକା ହାତରେ

ନାଟ୍ୟକାର

**ପରିବେଶକ : ଶ୍ରୀମା ଥିଏଟର**

ବାଲେଶ୍ୱର

ଶୁଭାରମ୍ଭ—୧୯୬୫ ମସିହା, ଅଗଷ୍ଟ ୧୫ ତାରିଖ

ଉଦ୍‌ଘାଟକ—ଶ୍ରୀଯୁକ୍ତ ସନ୍ତୋଷ କୁମାର ସାହୁ

ନିର୍ଦ୍ଦେଶକ—ଶ୍ରୀ ତ୍ରୈଲୋନାଥ ଦାସ

**ପରିବେଶକ : କଳାଶ୍ରୀ ଥିଏଟର,**

କଟକ-୧, ୧୯୬୭ ମସିହା

ଉଦ୍‌ଘାଟକ— ଶ୍ରୀ ନୀଳମଣି ରାଉତରାୟ

ମୁଖ୍ୟ ଅତିଥି—ଶ୍ରୀ ଶଶିଭୂଷଣ ମିଶ୍ର

ନିର୍ଦ୍ଦେଶକ— ଶ୍ରୀ ନଟବର ହେଟ

**ପରିବେଶକ : ଜନତା ରଙ୍ଗମଞ୍ଚ**

**କଟକ**

## ମୋ କହିବା କଥା—

'ସଙ୍ଗ୍ରାମ' ଓ 'ମୂର୍ତ୍ତିମନ୍ଦିର' ପରେ 'ଭୁବନେଶ୍ୱରୀ' ହେଉଛି ମୋର ତୃତୀୟ ପୂର୍ଣ୍ଣାଙ୍ଗ ନାଟକ । ଏହି ନାଟକର ପରିକଳ୍ପନା ଅନେକ ଦିନରୁ ମୁଁ କରିଥିଲି । ମାତ୍ର ନାନାଦି ବ୍ୟକ୍ତିଗତ ଅସୁବିଧା ଓ ସମୟର ଅଭାବ ଯୋଗୁଁ ଏହା ସଂପୂର୍ଣ୍ଣ ହୋଇପାରିନଥିଲା । ଏଥରେ ଜନତା ରଙ୍ଗମଞ୍ଚର କେତେକ ବରିଷ୍ଠ କଳାକାର ଜନତାରୁ ବାହାରି ଆସି ଶ୍ରୀମା ଥିଏଟର୍ ନାମ ଦେଇ ବାଲେଶ୍ୱରରେ ନାଟକ ପ୍ରଦର୍ଶନ କଲେ । ଉକ୍ତ ଅଭିନେତା ଓ ନିର୍ଦ୍ଦେଶକ ଶ୍ରୀ ଗୋଲକନାଥ ଦାସ, ମଞ୍ଚ ଓ ଚଳଚ୍ଚିତ୍ରର ଅପ୍ରତିଦ୍ୱନ୍ଦ୍ୱୀ ହାସ୍ୟରସ ଅଭିନେତା ଶରତକୁମାର ମହାନ୍ତି ହଠାତ୍ ଦିନେ ମୋ ପାଖରେ ପହଞ୍ଚି ନାଟକଟିଏ ପାଇଁ ଅନୁରୋଧ କଲେ । ସେମାନଙ୍କର ଐକାନ୍ତିକ ଅନୁରୋଧ ମୁଁ ଏଡ଼ି ପାରିଲି ନାହିଁ । 'ଭୁବନେଶ୍ୱରୀ' ସଂପୂର୍ଣ୍ଣ ହେଲା । ଶ୍ରୀମା ଥିଏଟରର ଯୋଗ୍ୟ ଅଭିନେତା ଅଭିନେତ୍ରୀମାନେ ଅକ୍ଳାନ୍ତ ପରିଶ୍ରମ କରି ନାଟକକୁ ଗୌରବ ମଣ୍ଡିତ କଲେ । ସେମାନଙ୍କୁ ଆଶୀର୍ବାଦ ଦେଲେ ଓଡ଼ିଶା ସଂଗୀତ ନାଟକ ଏକାଡେମୀର ସଭାପତି ଓ ସାଂସ୍କୃତିକ ବ୍ୟାପାର ବିଭାଗ ମନ୍ତ୍ରୀ ଶ୍ରୀ ସନ୍ତୋଷ କୁମାର ସାହୁ, ୧୯୭୮ ମସିହା ଅଗଷ୍ଟ ପନ୍ଦର ସ୍ୱାଧୀନତା ଦିବସରେ ନାଟକଟିକୁ ଉଦ୍‌ଘାଟନ କରି । ତା ପରେ ଶହ ଶହ ଦର୍ଶକଙ୍କର ଉଚ୍ଛ୍ୱସିତ ପ୍ରଶଂସା ଭିତରେ ଦିନ ପରେ ଦିନ ନାଟକ ପ୍ରଦର୍ଶନ ହେଲା । ମଞ୍ଚସଜ୍ଜା ଓ ଆଲୋକ ସଜ୍ଜା ହେଲା ଅତି ଚମତ୍କାର । ଶ୍ରୀମା ଥିଏଟର୍‌ର ଅଭିନେତା ଓ ଅଭିନେତ୍ରୀମାନେ ଏଥିପାଇଁ ଧନ୍ୟବାଦାର୍ହ ।

ମୋର ବହୁ ହିତାକାଂକ୍ଷୀ ବନ୍ଧୁ ମତେ ପ୍ରତ୍ୟକ୍ଷରେ ଓ ପରୋକ୍ଷରେ ନାନାପ୍ରକାର ସାହାଯ୍ୟ ଦେଇ ଅନୁଗୃହୀତ କରିଛନ୍ତି । ଏହି ନାଟକର ପ୍ରକାଶ ଦିନରେ ମୁଁ ସେମାନଙ୍କୁ ସ୍ମରଣ କରି ରଖୁଛି । ଇତି ।

ଦୁର୍ଗାପୂଜା
୧୯୭୮ ମସିହା

ନାଟ୍ୟକାର

## ଦ୍ୱିତୀୟ ସଂସ୍କରଣର ଭୂମିକା—

ଅତ୍ୟନ୍ତ ଆନନ୍ଦର କଥା ‘ଭୁଲନ୍ତୁ ଏନା’ ନାଟକର ପ୍ରଥମ ସଂସ୍କରଣ ଗତ ମଧ୍ୟରେ ଶେଷ ହୋଇ ଯାଇଛି ଏବଂ ଦ୍ୱିତୀୟ ସଂସ୍କରଣ ପ୍ରକାଶିତ ହେବାକୁ ଯାଉଛି । ଏହି ଅବସରରେ ନାଟକର ପ୍ରକାଶକ ଅନ୍ତରଙ୍ଗ ବନ୍ଧୁ ଶ୍ରୀ ଅଭିରାମ ମହାପାତ୍ର ତଥା ଓଡ଼ିଶାର ବୁଦ୍ଧିମାନ ପାଠିକା ପାଠକମାନଙ୍କୁ ମୁଁ ଅନ୍ତରର କୃତଜ୍ଞତା ଜଣାଉଛି ।

‘ଭୁଲନ୍ତୁ ଏନା’ ନାଟକ ପ୍ରଥମେ ଶ୍ରୀମା ରଙ୍ଗମଞ୍ଚଦ୍ୱାରା ଅଭିନୀତ ହୋଇଥିଲା । ଶ୍ରୀମା ରଙ୍ଗମଞ୍ଚର ବିଲୟ ପରେ ଏହା ଏକ ସମୟରେ ଓଡ଼ିଶାର ଦୁଇଟି ପ୍ରସିଦ୍ଧ ବ୍ୟାବସାୟିକ ନାଟ୍ୟ ପ୍ରତିଷ୍ଠାନ ‘କଳାଶ୍ରୀ’ ଓ ‘ଜନତା ରଙ୍ଗମଞ୍ଚ’ ଦ୍ୱାରା ବହୁ ରଜନୀ ଅଭିନୀତ ହୋଇଛି ଏବଂ ଏବେ ମଧ୍ୟ ହେଉଛି । ନିକଟରେ ଏହି ନାଟକର ହିନ୍ଦୀ ଅନୁବାଦ ‘ଇନସାନ୍ ଔର ଫରିସ୍ତା’ ନାମରେ କଟକର ‘ମୁସ୍ଲିମ ୟୁଥ୍ ଓ କଲଚରାଲ୍ ଅସୋସିଏନ୍’ ଦ୍ୱାରା ଅନ୍ନପୂର୍ଣ୍ଣା ଟି-ଗ୍ରୁପ୍ ରଙ୍ଗମଞ୍ଚରେ ଅଭିନୀତ ହୋଇଛି ।

ପ୍ରଥମ ସଂସ୍କରଣର ନାଟକକୁ କେତେକାଂଶରେ ପରିମାର୍ଜିତ ଓ ପରିବର୍ତ୍ତିତ କରାଯାଇ ଦ୍ୱିତୀୟ ସଂସ୍କରଣ ପ୍ରକାଶିତ ହେଲା । ପ୍ରଥମ ସଂସ୍କରଣ ପ୍ରତି ଓଡ଼ିଶାର ନାଟ୍ୟାମୋଦୀ ବନ୍ଧୁମାନେ ଯେଉଁ ସଦିଚ୍ଛା ପ୍ରକାଶ କରିଛନ୍ତି ଦ୍ୱିତୀୟ ସଂସ୍କରଣ ପ୍ରତି ତଦ୍ରୂପ ଆଗ୍ରହ ପ୍ରକାଶ କରିବେ—ଏତିକି କାମନା ।

ନାଟ୍ୟକାର

୧୭ । ୮ । ୭୦, ରାଖୀପୂର୍ଣ୍ଣିମା,
ବାଲେଶ୍ୱର

# ସୂଚନା

ମମତାର ହେଉ ସ୍ୱର୍ଗ
ମସ୍ଜିଦ ପଥେ

ଅଚେତ ବୁକରେ ଥାଇ
ସ୍ୱତାଣ ବତାସ ଚୁକୁ ଚଷି,

ମାଞ୍ଚେଷ୍ଟର ସେ
ହୃଦୁର ମମତା ଅଞ୍ଚଳେ
ଜାବୁଡ଼ି ଧରରେ

ବାପର ସୋହାଗ
ଅଜାଡ଼ି ଦେଉଛୁ
ଜାଳିଆ ବହୁତ ଭଲେ···

(ଏଇ ଗୀତ ଭିତରେ ଆସିଛି ଅମଦେବ୍—ଜାବରେ ଅମିନା—ଶୁଆଇ ଦେଉଛି ଅମିନାକୁ)

ଅମଦେବ୍—ବେଟୀ ଅମୀନା, ଗୁଡ଼ା ଅବ୍ବେଘ ବେଟୀ । ମେଁ ଜାବ୍ରର ହୁଁ—ମେଁ ଏକ୍ ବଡ଼୍ ନସୀବ୍ ବାପ୍ ହୁଁ ସୋ ବେଟେରଲଏ ଖୁଶି ନେହିଁ କର୍ ସକ୍ତା । ମୁଝେ ମାଫ୍ କର୍ ବେଟୀ ! ହେ ଖୋଦା, ହେ ଅଲ୍ଲା ମୁଝେ ରାସ୍ତା ଦଖାଦୋ !

ଲଂଙ୍ଗ—(ଦୂରରୁ ଡାକ ଡାକ ଆସିଛି) ସ୍ୱକ୍—ବ୍ବକ୍—ତାହାକୁ କହୁ ନ କହୁ ରୁ ଖୁଲଗାପିଲ୍ ବେମିତ ?

ଅମଦେବ୍—ଲଂଙ୍ଗ !!! ଓଜଲ୍ ମୋର ସର୍ବନାଶ କରିଛୁ ରେ, ମୋର ଘରଦ୍ୱାର ସବୁ ନେଇଯାଇଛୁ—ମୁଁ ଏଠିକି ନ ଆସି ଚିଣ୍ଡି ବୁଝିବେ ?

# ପ୍ରଥମ ଅଙ୍କ

## ପ୍ରଥମ ଦୃଶ୍ୟ—

[ ଦୀନେଶ ବାବୁଙ୍କ କକ୍ଷ—ସ୍ୱର୍ଣ୍ଣ ଆଲୋକରେ ଚନ୍ଦ୍ର ଦେଖାଯାଉଥାଏ । ଅରତର ଫଟୋ ଖଟରେ ଠିଆ ହୋଇଥାନ୍ତି ଦୀନେଶ ବାବୁ—ମନ ଭିତରେ ତାଙ୍କର ଅଶେଷ ଚିନ୍ତା । ଅରୁଣା ନାଚି ନାଚି ଗୀତ ଗାଇ ଗାଇ ଦୋତାଲା ଉପରୁ ଓହ୍ଲାଉଛି—ବୟସ ତାର ପାଞ୍ଚ ବା ଛଅ । ]

—ଗୀତ—

ବୋହୂବୋହୂଙ୍କା ଛପିଛପିକା ଲୁଚଲୁଚକା ଅଡ଼ିବ,
ନାଚନାଚକା ଶାଶୂଘରେ ଖେଳିବ ।।
ମୋ ମାଆ ଦେବେ ମିଠା-ଖିର ବାପା ଦେବେ ସୁନାହାର
ଶାଶୂଘରେ ମୁଁ ହସିହସିକା ଦୋଳିରେ ବସି ଝୁଲିବ,
ନ ହେଲେ ବାପା, ଲୁଚଲୁଚକା କାନ୍ଦିବ ।।

ହେଉଛି ବାବା, ଜହ୍ନଦଉଚ, ମନେରଖିବ ମୋ ପ୍ରାଣ
ଏଥିରୁ ଟିକେ ଊଣା ହେଲେ ରୁଷିବ ।
ସୁନାନାଙ୍କ ବୋହୂ ହେବ ପଣେକରେ ଜଣେ ହେବ
ଅଶୋକ କଣ୍ଠ, ଭଙ୍ଗି ଭାଲୁଜ୍ଞ, ଫୁଲ ବୃନ୍ଦ ବସିବ,
ଶାଶୁ ନଣନ୍ଦ ମନକୁ ସୁଦ୍ଧି ତୋଷିବ ।।

ବଶିଆ—(ଜଳଖିଆ ଧରି ପ୍ରବେଶ କରି) ନାଚ ନାଚ ଅଙ୍କଗଲଣି ଦେଇ— ଜଳଖିଆ ଖାଇବ ଆସ ।

(ଜଳଖିଆ ଖାଇସାରିବା ପରେ ଅରୁଣାକୁ ନେଇ ବଶିଆ ପ୍ରସ୍ଥାନ କଲା — କିଛି ସମୟ ପରେ ସମସେର୍ ପ୍ରବେଶ କରିଛି ।)

ସମସେର୍ — ବାବୁ ! ବାବୁ !

ଦୀନେଶ — ସମସେର୍ !

ସମସେର୍—ବାବୁ ! ମୁଁ ମରିଗଲି—ମତେ ଦୟା କରନ୍ତୁ ! ମୋର ଘର ଖଣ୍ଡକ ମୋତେ ଫେରାଇ ଦିଅନ୍ତୁ ।

ଦୀନେଶ—ଚୁପ୍ କର ! ଦୟା ! ବର୍ଷକ ଭିତରେ ପରିଶୋଧ କରିବୁ ବୋଲି ଏକ-ଦୁଇ-ତିନ୍ କରି ହଜାରେ ଟଙ୍କା ଯେତେବେଳେ ଗଣି ନେଇଥିଲୁ ସେତେବେଳେ ଜାଣି ଥିବ ନ ଥିଲୁ ଟଙ୍କାଟା ପରିଶୋଧ ନ କଲେ ଘରଦ୍ୱାର ସବୁ ନିଲାମ ହୋଇଯିବ ବୋଲି ?

ସମସେର୍ — ସବୁ ମୋର କସୁର ହଜୁର୍ — ହେଲେ ଆପଣ ବିଚାର କରନ୍ତୁ !

ଦୀନେଶ—ନା, ନା — ଆଉ ବିଚାର କରିବାର କିଛି ନାହିଁ । ବର୍ଷକ ଜାଗାରେ ପାଞ୍ଚବର୍ଷ ହୋଇଗଲା — ଟଙ୍କା ମାଗି ପଠେଇଲେ ଆଜି ଦେବି, କାଲି ଦେବି କହି ଖେଳି ବୁଲିଲୁ — ଅଗତ୍ୟା ଜମିବାଡ଼ି ନିଲାମ କରିବା ଛଡ଼ା ଅନ୍ୟ ବାଟ ନ ଥିଲା । ଟଙ୍କା ପରିଶୋଧ ନ କଲେ ଏଇଆ ହବ ବୋଲି ତୁ କଣ ପଣ୍ଡି ଜାଣି ନ ଥିଲୁ ?

ସମସେର୍ — ସବୁ ମୁଁ ବୁଝୁଛି ହଜୁର — ହେଲେ ବେମାର ଝିଅଟାକୁ ନେଇ ମୁଁ ଏବେ କୋଉଠିକି ଯିବି ?

ଦୀନେଶ — ଜାହାନ୍ନାମକୁ ଯା — ମୋର ସେଥିରେ କଣ ଅଛି ?

ସମସେର୍ — ହଜୁର ! ଆଉ ବର୍ଷଟିଏ ମତେ ସମୟ ଦିଅନ୍ତୁ — ବର୍ଷକ ଭିତରେ ସୁଧ ମୂଳ ଆପଣଙ୍କର ପରିଶୋଧ ନ କଲେ, ଆପଣଙ୍କର ଯାହା ଖୁସି ତା କରିବେ । ମେହେରବାନି କରନ୍ତୁ ହଜୁର ।

ଦୀନେଶ—ପୁଣି ବର୍ଷେ ସମୟ ? ହୁଁ—! ଯାହା ଉନବର୍ଷ ଭିତରେ ହୋଇପାରିଲାନି, ତା ବର୍ଷକ ଭିତରେ ହବ ? ମୁଁ ପଚାରୁଚି, ତୁ ଏଠୁ ଯିବୁ କି ନାହିଁ ?

ସମସେର୍—ବେଟୀ ଅମୀନା ବେମାର୍ ବାବୁ—ତାକୁ ଗଛତଳେ ଶୁଆଇ ଦେଇ ମୁଁ ଆପଣଙ୍କ ପାଖକୁ ଧାଇଁ ଆସିଚି । ଜମିବାଡ଼ି ସବୁ ନିଅନ୍ତୁ ହଜୁର୍—ହେଲେ ଘର ଖଣ୍ଡିକ ପାଇଁ ଦୟା କରନ୍ତୁ ।

ଦୀନେଶ—ଘରଟା ଛାଡ଼ିଦେଲେ ମୁଁ ଆଉ ପାଇବି କଣ ? ଅଦାଲତର ନ୍ୟାୟ ବିଚାରରେ ତୋର ଜମିବାଡ଼ି, ଘରଦ୍ୱାର ସବୁ ବର୍ତ୍ତମାନ ମୋର । ତୁ କୁଆଡ଼େ ଯିବୁ ସେ କଥା ଯଦି ଅଦାଲତର ମହାମାନ୍ୟ ବିଚାରପତି ନ ବୁଝିଲେ, ମୁଁ କାହିଁକି ବୁଝିବି ?

ସମସେର୍—ବାବୁ ! ହଜାରେ ଟଙ୍କାରେ ସାତ ଏକର ଅବଲ ଜମି, ଘରବାଡ଼ି ସବୁ କଣ ବୁଡ଼ିଯିବ ? ଏଇଟା କଣ ଓ୍ୱାଜିବ୍ ହେଲା ବାବୁ—ନ୍ୟାୟ ବିଚାର ହେଲା ?

ଦୀନେଶ—ହିଁ—ଏଇଟା ନ୍ୟାୟ ବିଚାର । ଅପିଲ୍ ତ କଲୁ—ଫଳ କଣ ହେଲା ଦେଖିଲୁ ତ ?

ସମସେର୍—ସବୁ କସୁର୍ ମୋର ବାବୁ—ଆପଣଙ୍କର ସୁଧ ମୂଳ ସବୁ ଜମି ବିକି ଦେଇଦେବି । ମେହେର୍‌ବାନୀ କରନ୍ତୁ ।

ଦୀନେଶ—ମେହେର୍‌ବାନୀ ? ଦୟା ? ଦୟା ହେଉଚି ଦୁର୍ବଳତାର ରୂପାନ୍ତର । ମୁଁ ଆଉ କିଛି ଶୁଣିବାକୁ ଚାହେଁନା—ଶୀଘ୍ର ଏଠୁ ବାହାରିଯା !

ସମସେର୍—ହଜୁର୍, ଆପଣ ରହମ୍ ଆଦ୍‌ମୀ । କଣ ଅଭାବ ଅଛି ଆପଣଙ୍କର ? ଲକ୍ଷପତି ଆପଣ—!

ଦୀନେଶ—ମୁଁ ଲକ୍ଷପତି ହୋଇପାରେ—ତା ବୋଲି ମୋର ନ୍ୟାଯ୍ୟ ଦାବୀକୁ ହଟିଯିବି କାହିଁକି ? ମୁଁ ପୁଣି ଥରେ ତତେ ପଚାରୁଛି—ତୁ ଭଲରେ ଏଠୁ ଯିବୁ କି ନାହିଁ ?

ଯମଦେର୍—ସୁଲପିବ ବାବୁ—ହେଲେ ଯମଦେର୍ କେବେ ଭୁଲାଣ ନ ଥିଲା । ନଜର ସବୁ କିଛୁ ନଜେଇ ଦେଇ ଅଜି ହବାକୁ ଯାଉଛ ଫକୀର । ଆପଣଙ୍କ ଚର୍ଣ୍ଣି ଦେଯା ଧନରେ ଝିଅଣ୍ଡ ଚନ୍ଦ୍ରାଳ ଘରକୁ ସେ ପଯନ୍ଧ କରେନ ହଜୁର—ସେ ବୁଲପିବ—ହେଲେ ଅଜ ଖାଲି ହାତରେ ଫେରବନ ।

ଘନେଶ—ଚୁପ୍ କର୍ ସ୍କାଉଣ୍ଡ୍ରେଲ୍—( ମାରିଲେ ) ଯାହାସ ତ ତୋର କମ୍ ନୁହେଁ ? ବାହାଣଯା କରୁଚ !

ଯମଦେର୍—ମତେ କ୍ଷେମ କରିଦିଅନ୍ତୁ ହଜୁର୍ । ଅମୀନା ବେଟୀକୁ ବୁଝାନ୍ତୁ । ତାକୁ ସଚ୍ଚରିତେ ଶୁଆଇ ଦେଇ ମୁଁ ଆସିଚ । ସେଇ ଘଟଣାରେ ସେ ମଣ୍ଡିବ ବାବୁ ! ମୋର ସେଇ ଗୋଟିଏ ବୋଲି ଅମାନତ୍ । ଘର ଶଣ୍ଡି କ ନ ପାଇଲେ ତାର ଜାନ୍ ବୁଲପିବ ବାବୁ ! ତା ଅଗରୁ ଆପଣ ମତେ କ୍ଷେମ କରିଦିଅନ୍ତୁ ହଜୁର୍ ! (ଗୋଡ଼ ଧରିଲା)

ଘନେଶ—ମୁଁ କିଛୁ ଶୁଣିବନି । ମୋର ସବେ କଥା—ତୁ ଫିରୁ ନ ନାହିଁ—ଯଦ୍ଭଜାନ୍ !

ଯମଦେର୍—ବାବୁ ! ସଦ୍ଭଜାନ୍ କିଏ—ତୁମେ ନା ମୁଁ ?

ଘନେଶ—ଯମଦେର୍ ! ତୁ ଭୁଲିଯାଉଚୁ ଏଇଟା ଭଦ୍ରଲୋକର ଘର !

ଯମଦେର୍—ଭଦ୍ରଲୋକ ? କିଏ ଭଦ୍ରଲୋକ ବାବୁ ? ଷ୍ଟୋର, ଡକାୟତ-ମାନେ ବଡରେ ଲୁଚ ଲୁଚ ଚୋରି କରନ୍ତି—ଡକାୟତି କରନ୍ତି—ଖୁନ୍ କରନ୍ତି । ମାତ୍ର ଆପଣଙ୍କ ଭଳି ଯୋଉ ଧୋବଧାଉଳିଆ ପାଟୁଆ ଲୋକମାନେ ଦିନ ଦିପହରରେ ଅମଭଳି ଗରିବଙ୍କ ତଣ୍ଟି ଚିପି ସବୁ ଲୁଟ୍ କରି ନିଅନ୍ତି ସେମାନେ ଭଦ୍ରଲୋକ ?

ଘନେଶ—ଚୁପିଅ !

ଯମଦେର୍—କହିପାରିବ ବାବୁ—କାହାପାଇଁ ଆଜ ଅମୀନା ମୋର ଭୁଇଁ ଉପରେ ଲୋଟିଯାଉଛି ? କୁହ ! ଭଦ୍ରଲୋକର ଖୋଳ ପିନ୍ଧି—ପାଠ ପଢ଼ି ଓଲଲ୍ ହେଇ ମଣିଷ ଚରଉଚ—କୁହନା ?

ଧନେଶ—ଓଃ, ନା—କଏ ଅଛୁ ରେ—! ଝଣିଆ—ଝଣିଆ !

ଝଣିଆ—(ପ୍ରବେଶକରି) ବାବୁ !

ଧନେଶ—ନେଇଆ ମୋ ହ୍ୱିପ୍—ଏଇସବୁ ସଇତାନ କୁକୁରଗୁଡ଼ାଙ୍କୁ ମାରି ମାରି ମାରିଦେଲେ ବି ମୋ ମନରେ ଟିକିଏ ଦୁଃଖ ଆସିବନି ।

ସମସେର୍—ବାବୁ ! ତୁମେ ମୁହଁ ସମ୍ଭାଳି କଥା କୁହ । ବଡ଼ଲୋକ ହେଲ ବୋଲି, ଗରିବଗୁଡ଼ାଙ୍କୁ କୁକୁର ବନେଇଦବ ?

ଧନେଶ—Stop !

ସମସେର୍—ମତେ ଅଜ ମାରିଦେଲେ ମାରି ପକାନ୍ତୁ—ହେଲେ ମତେ ଘରଖଣ୍ଡିକ ମେହେର୍ବାନି କରନ୍ତୁ । ଦ'ଦିନ ହେଲା ଅମୀନା ବେଟୀ ଗଛମୂଳେ ପଡ଼ିଛି । ଚଲ୍ ନାହିଁ କି ଚୁଲ ନାହିଁ—ଔଷଧ ନାହିଁ କି ପଥ୍ୟ ନାହିଁ । ସେ ମରିଯିବ ବାବୁ—ଅଠ ବର୍ଷର ପିଲାଟା—ମୋର ଗୋଟିଏ ବୋଲି ଅମାନତ୍ । ତାକୁ ବଞ୍ଚାନ୍ତୁ ହଜୁର୍ !

ଲଂଟୁ—(ଧାଇଁ ଧାଇଁ ପ୍ରବେଶକରି) ଅବ୍ବୁ—ଅବ୍ବୁ !

ସମସେର୍—ଲଂଟୁ, କ୍ୟା ହୁଆ ଲଂଟୁ ?

ଲଂଟୁ—ଅବ୍ବୁ ! ଅମୀନା ବେଟୀ ତୋର ଖତମ୍ ହୋଇଯାଇଛି ଅବ୍ବୁ !

ସମସେର୍—ଲଂଟୁ ! !

ଲଂଟୁ—ମୋ କଥା ନମାନି ଦେମାର୍ ଜୁଆଟାକୁ ଗଛମୂଳରେ ଗଡ଼େଇ ଦେଇ ଆସିଲ୍—ଜୀବରେ କମି କମି ସେ ଅଖି ବୁଜିକରି ଦେଉଛି ଅବ୍ବୁ—ମରି କାଠ ହୋଇଯାଇଛି ।

ସମସେର୍—ହେ ଅଲ୍ଲା ! ହେ ଖୋଦା ! ତୁମ୍‌ନେ ୟେ କ୍ୟା କିୟା ? ବାବୁ, ଜମିବାଡ଼ି ଘରଦ୍ୱାର ସବୁ ନିଅ—ହେଲେ ମୋ ଅମୀନା ବେଟୀକୁ ମତେ ଫେରେଇଦିଅ । ଦିଅ ବାବୁ, ମୋ ବେଟୀକୁ ମତେ ଫେରେଇଦିଅ !

(ଅରୁଣା ପ୍ରବେଶ କରି 'ବାବା' 'ବାବା' ଡାକ)

ଅରୁଣା—ବାବା—ବାବା !

(ଧନେଶ କୋଳେଇ ନେଇଦେଲେ ସମସେର୍ ତାକୁ ଲକ୍ଷ୍ୟ କରି ପାଗଳଙ୍କ ଭଳି ଡାକନ୍ତି—)

ସମସେର୍—ଅମୀନା !

ସଟନଶ—ଯା, ବାହାର ଏଠୁ ।

ସମସେର୍—ବେଟୀ ଅମୀନା !

(ଡାକି ଡାକି ଚାଲିଗଲା)

## ଦ୍ୱିତୀୟ ଦୃଶ୍ୟ—

[ ଧରଣୀ ଦାସଙ୍କ ଘରର ଅଗଣା—ବାହାରୁ ପ୍ରବେଶ କଲେ ଜନାର୍ଦ୍ଦନ ପାଣ୍ଡ । ]

ଜନାର୍ଦ୍ଦନ—ଧରଣୀ ବାବୁ ଘରେ ଅଛ—ଓ ଧରଣୀବାବୁ !

(ଗୀତ ଗାଇ ଗାଇ ନିତ୍ୟାନନ୍ଦ ବାହାରୁ ଆସିଲା)

ନିତ୍ୟାନନ୍ଦ—ପ୍ରେମ ଜଳ ଦୂପଟ୍ଟା ମଲ୍‌ମଲ୍‌କା ଓ ଜି ··

ଜନାର୍ଦ୍ଦନ—ହଇରେ, ତୋର ଆଜ୍ଞା କାହିଁ ?

ନିତ୍ୟାନନ୍ଦ—ବାସନ ମାଜୁଛି । (ଗୀତଗାଇ ଚାଲିଗଲା)

ଜନାର୍ଦ୍ଦନ—ଓ ଧରଣୀ ବାବୁ !

ଧରଣୀ—(ଭିତରୁ) ହଁ-ହଁ ! କିଏ ପାଣ୍ଡବାବୁ ? (ପହଞ୍ଚିଲେ)

ଜନାର୍ଦ୍ଦନ—ନମସ୍କାରଂ ଧରଣୀବାବୁ ! ଘର ଭିତରେ କଣ ପାଇଁଟି କରୁଥିଲ କି ହେ ? ପୁଅ ବୋଇଲେ ବାସନ ମାଜୁଛି ।

ଧରଣୀ—ହିଁ, ଘର କଲେ ଚାରି ପ୍ରକାର ଧନ୍ଦା ଥାଏ—ତୁମେ ଘର କରି ବୁଝୁନ ଅବ କି ? ଏ ସ୍ତ୍ରୀ-ସ୍ୱାଧୀନତା ଯୁଗରେ ପୁରୁଷମାନଙ୍କର ଦଶାରଫା ଶେଷ ।

ଜନାର୍ଦ୍ଦନ—ଆବ୍ବା, ବଡ଼୍ ଭ ଖାଣ୍ଟି କଥା କହିଲ ହେ ! ମାଇକିନା ସୁଡ଼ାଭି ମର୍ଦ୍ଦଙ୍କ ଉପରେ ପଡ଼ିଡିବାର ହେ ! ମାଇକିନା ଲୋକ ମୁଡ଼ାଇ ପରି ଲେଡ଼ିକ୍ କାଣ୍ଡ—

ଧରଣୀ—ଭଣି କହୁଛ ପାଣବାବୁ—ଆମ ଘରେ ତ ନଅଠନଅ ଲାଗିଛି ପାଳି—
ପତ୍ନୀବେଳେ ଏ କଷ୍ଟର କଷ୍ଟର ଭିତରେ ମୃତ୍ୟୁ ଶଯ୍ୟାପ । ଏ ଅନଟନ
ଯୁଗରେ ମଣିଷ ସ୍ୱଚ୍ଛନ୍ଦ ଘରଭଡ଼ା ଦେଇପା କରି ଦପଦପା
ଗ୍ରେଜୁଆର ଜୀବନ ବୋଲି—ତା ବି ହେଉନାହିଁ । ସବୁଆଡ଼ୁ ଠେଲା—
ଉପରୁ—ତଳୁ ।

ଜନାର୍ଦ୍ଦନ—ଅଁଙ୍କେ ପ୍ରେସ୍ କପ ବେଇଲ ହେ ? ଘରଭଡ଼ା ଦେଇପା ନାହିଁ
ଚଳିବାର—ହଇଏ ଡମ ଭଡ଼ାଘରେ ସବୁଠ ଭଲ ଭଲ ଲୋକ ସ୍ୱବାର
ଏକା—ଓଁକଲ୍—ମାଜିଷ୍ଟ୍ରେଟ୍—

ଧରଣୀ—ନାହିଁକ ସେମାନଙ୍କ ଆଉ କଥା ପାଣବାବୁ—ଭଡ଼ାଦାରମାନଙ୍କ
ସବୁ ଆଧୁନିକ କଳାପାହାଡ଼ । ଭଡ଼ା ଦେଉନ୍ତି କାହିଁ ହେ—

ଜନାର୍ଦ୍ଦନ—ଷ୍ଟ୍ରେଞ୍ଜ୍ (strange)—ଏ କଥା ଶୁଣି ଲଜ୍ଜାରେ ମଥା
ସମାନେ ଅବନତ ହେଇଯାଉଛ ହେ ! ଏତେ ବଡ଼ ବଡ଼ ଲୋକ
ଭଡ଼ା ନାହିଁ ଦେବାର ? ଷ୍ଟ୍ରେଞ୍ଜ୍—ଷ୍ଟ୍ରେଞ୍ଜ୍ !

ଧରଣୀ—ସେ ସବୁ ଦୁଃଖ କଥା ଉଣ ଶୁଣିବ, ଦଣ୍ଡ କରୁଛ । ଭଡ଼ା ମାଗି
ମାଗି ଦେଲେ ବେଲେ ଏମିତିକା ଦର୍‌ଦାର କରୁଛ—ମୁଁ ଖାଲି ସ୍ୱପ୍ନ
ଆମ ଏ ତାଳଦଣ୍ଡା କେନାଲ୍ ଉପରେ ଗୋଟେ ଡ୍ୟାମ୍ (dam)
ହେଇଯାଆନ୍ତା କି ଏ ଘର ସବୁ ଡ୍ୟାମତଳେ ବୁଡ଼ିଯାଆନ୍ତା । ସେ
ବାବଦକୁ ସରକାରରୁ କ୍ଷତିପୂରଣ ନେଇ ମୁଁ ବେଶ୍ ଆରାମରେ ରହନ୍ତି ।

ଜନାର୍ଦ୍ଦନ—ନାଇଁ ହେ ଧରଣୀବାବୁ ! ସରକାରଙ୍କ ଡ୍ୟାମ୍‌ତଳେ ଡ୍ୟାଣ
ପାଇଁ ବୁଡ଼ାଇବାର ହେ ? ସେଥିରୁ ଫାଇଦା କଅଣ ହେ ? ଯାଉ,
ଆମ ଟେଣ୍ଡରର କଥା ପଡ଼—କଣ କଲ ?

ଧରଣୀ—ସେଇ ଟେଣ୍ଡରର କଥା ତ ? ଆଜ୍ଞା ପାଣବାବୁ, ମୁଁ ଅଫିସରେ
ଦେଖିଲି—ତୁମ ଟେଣ୍ଡର୍ ତ ଲୋଏଷ୍ଟ୍ ହେଇନ ! ତୁମେ ଗୋଟିଏ
ସ୍କିଲ୍—କଣ କରିବ ?

ଜନାର୍ଦ୍ଦନ—ମତେ ବାଲ୍ କହୁଥାର କହେ ? ଟେଣ୍ଡର୍ ଲୋଏଷ୍ଟ୍
ହେଇନ ? କଅଣ କରିବା ବେଇଲେ ଆମେ କରିବା ।

ଧରଣୀ—ଓଃ—ବଡ଼ ମୁସ୍କିଲ । କଣ ଏତେ ସହଜରେ ହବ ? ମୁଁ ଅଫିସରୁ ଯାହା ବୁଝିଲି, ତୁମ ଟେଣ୍ଡର୍ ଫିଫ୍‌ଥ୍ ପୋଜିସନ୍‌ରେ ଅଛି ।

ଜନାର୍ଦ୍ଦନ—ଏଁ ! ସମାନେ ଫିଫ୍‌ଥ୍ ! ପଞ୍ଚମ ? ହେଲେ ତୁମେ ଚାହିଁଲେ ଧରଣୀବାବୁ, ସବୁ କରିଦେଇପାର । ବଡ଼ ସାହେବଙ୍କୁ କହି ଟେଣ୍ଡର୍‌ଟା ଏକ୍‌ସେପ୍ଟ୍ କରେଇ ନ ଦେଲେ—ସମାନେ ପ୍ରାଣେ ବଞ୍ଚିଯିବନ୍ତି ହେ—ଏଇଥିରୁ ଆମେ ତୋ ବଞ୍ଚିବାର ।

ଧରଣୀ—ବୁଝିଲେନି ଯାଚବାବୁ—ଏ ଯଦି ଅଫିସ କଥା ହୋଇଥିଲେ ମୁଁ କଣ ଛାଡ଼ିଥାନ୍ତି ? ଏତେବେଳକୁ ପେଷ୍ଟ ଏମିତି 'ମୋଡ଼ିଥାଆନ୍ତି ଯେ ଏ ଟେଣ୍ଡର୍ ତୁମର ନ ହେଲା ଅନ୍ୟ କାହାର ହୁଅନ୍ତା—ଏ ଧରଣୀ ଦାସ ଏମିତି ଯେମିତି ଲୋକ ନୁହେଁ—ଜାଣିଚ ?

ଜନାର୍ଦ୍ଦନ—ଅମେ ମୋଇଟା ଜାଣିବାର ହେ—ତୁମେ ବଡ଼ ଷ୍ଟ୍ରଙ୍ଗ୍ (strong) ଲୋକ—ତୁମେ ଚାହିଁଲେ ସବୁ କରିଦେବାର ବଡ଼ସାହେବଙ୍କୁ କହି ।

ଧରଣୀ—ବାପ୍‌ରେ ବାପ୍, ସେଇ ଅଫିସର ଯୋଉ ବଡ଼ ସାହେବ୍—! ସେ ଜଣେ କାହାର କଥା ଶୁଣିବ—ବଡ଼ କଡ଼ା ଲୋକ, ଗୋଡ୍ ମଣିଷ କଥା ପରି ଏଡ଼େଇଦିଏ !

ଜନାର୍ଦ୍ଦନ—ଶୁଣିଲି କଥାରେ ଆମକୁ ଜାପ ମିଳିବ ହେ—କେତେ ବଡ଼ ଲୋକଙ୍କୁ ପାତାଳ୍ ଦେଇଗଲ—ତୁମେ ଚେଷ୍ଟାକଲେ ସବୁ ହୋଇଯିବ ଏହା । ଲୋଫିଶ୍ଟ ନ ହେଲ ହେ—ଗଭର୍ଣ୍ଣମେଣ୍ଟ ଚାହିଁଲେ ସବୁ ହବ । ଆମ ପାଇଁ ଚେଷ୍ଟା କର ହେ ।

ଧରଣୀ—ଚେଷ୍ଟା ମୁଁ କଣ କରୁନି ? ଆମ ଅଫିସ କଥା ହୋଇଥିଲେ ଜମାରୁ ପାଞ୍ଚ ପରସେଣ୍ଟ୍‌ରେ ଦାମ କରେଇ ଦେଇଥାଆନ୍ତି ।

ଜନାର୍ଦ୍ଦନ—ପାଞ୍ଚ ପରସେଣ୍ଟ ? ଆଜ୍ଞା, ଦଶପ୍ରାଣୀ ଜୁଟନ୍ତୁ ସମାନେ ମଣ୍ଡିଯିବେ ହେ । ରେଟ୍ ଦାମରେ ଲାଭ ବେଶି ନାହିଁ ଥିବାର ।

ଧରଣୀ—ମୁଁ କଣ କରିବ ପାଗଳବାବୁ ? ତୁମର ପାଇଁ ଅଫିସ ଭିତରେ, ଏ ଚୌକିକୁ ସେ ଟେବୁଲ—ସେ ଟେବୁଲରୁ ଏ ଚୌକି କେତେ ଯେ ଧାଇଁଲିଣି ତାର ଲିମିଟ୍ ନାହିଁ । ଜାଣିଚ, ଖାଲି ତୁମର ପାଇଁ ସେ

ଅଫିସ୍‌ଟାରେ କାହା ପାଖରେ ଖୁଡ଼ୀ—କାହା ପାଖରେ ମାମୁଁ ମଉସା—ଇମିତ କ ଗଡ୍‌ଫାଦର୍ ସମ୍ପର୍କ ପର୍ଯ୍ୟନ୍ତ ମୁଁ ସ୍ଥାପନ କରିଛି —ତଥାପି ହେଉନି ।

ଜନାର୍ଦ୍ଦନ—ଦୟାକର ହେ ଧରଣୀବାବୁ ! ଅମେ ତ ବି-କ୍ଲାସ କଣ୍ଟ୍ରାକ୍ଟରରୁ ଏ-କ୍ଲାସକୁ ଉଠିଲୁ—ତୁମମାନେ ହଜାରେ ଟଙ୍କା ଦେଉଛୁ— କମିତ ମିଛେ କାମଟା କରିଦିଅ ।

ଧରଣୀ—ହଜାରେ ? ଦେଇପାରୁଁ କହୁଛ ତୁମେ ଗୋଟିଏ ସ୍କୁଲ୍ ହବ ଏ, ସେଥିରେ ଦେବ—ଅଣୀବ ଲକ୍ଷ ଆକାରରେ ତାର ଭବନ୍ । ଟଙ୍କା ଦେବାପାଇଁ ଏମିତି ଫନ୍ଦିଇଲେ ଚଳିବ ? ପାହୁଏ ବାଣ୍ଠ ଅଛେଇ ଅଛ । ଏଇ ମତେ ଦେଖୁନ—ଇଞ୍ଜିନିୟର୍, ଅଣ୍ଡି-କରସର୍—ସମସ୍ତଙ୍କୁ ମୁଁ କେମିତି ଚଟାଣି କରିଦେଇଛି !

ଜନାର୍ଦ୍ଦନ—ଦବା କଥାଟା ଦେଖ ସେ--ହେଲେ ପାଞ୍ଚ ପର୍ସେଣ୍ଟକୁ ପ୍ରମିସ୍ (promise) କରିପାରୁନି ।

ଧରଣୀ—ସେ ପ୍ରମିଜ୍ ପ୍ରମିଜ୍ ଚଳିବନି । ଦୁ ଲକ୍ଷ ଟଙ୍କାର କାମ । ଟେଣ୍ଡର୍ କମ୍‌ରେ—ଅର୍ଥାତ୍ ମିନିମମ୍ ଦଶଟି ହଜାର ।

ଜନାର୍ଦ୍ଦନ—ଶିବ—ଶିବ—ରାମଚନ୍ଦ୍ର—ଦଶ ହେଇକ—ଦଶହଜାର ? ମରିଯିବା କଥା ହେ ।

ଧରଣୀ—ତା'ଠୁ ଗୋଟିଏ ପଇସା କମ୍ ହେଲେ ହେଇପାରିବନି ।

ଜନାର୍ଦ୍ଦନ—ଧରଣୀବାବୁ, ଟିକେ ଦୟା କର ହେ ! ଗଭର୍ଣ୍ଣମେଣ୍ଟକୁ କହ ସେ ବ୍ରିଜ୍ କଣ୍ଟ୍ରାକ୍ଟଟା ଦେଇଦେଲେ ଆଉ ଦ ହଜାର ଦେଇ ପଠେଇଦେବି । ଏଇଥର ଏତିକରେ ଚଳେଇଦିଅ । (ହାତ ଧରିଲା)

ଧରଣୀ—ମୋ ହାତଟା ଛାଡ଼ିଦିଅ ଧରଣୁ—ମୁଁ ଟଙ୍କା ନେବି ନା କାମ ଦେବି ? ବୁଝିଲ ଯାଦବବାବୁ, ତୁମେ ଖାଲି ମୋର ଜାଣିବା ଶୁଣିବା ଲୋକ ବୋଲି ତୁମ ପାଇଁ ମୁଁ ଲାଗିଛି, ନ ହେଲେ ମୋର ଏଥିରେ ମଣାଭର ଲାଭ ନାହିଁ ।

ଜନାର୍ଦ୍ଦନ—ନାହିଁ ନାହିଁ ହେ ଧରଣୀବାବୁ—ଏଇଟା ହୋଇଗଲେ ତମକୁ ମୁଁ ପାଞ୍ଚଶ ଟଙ୍କା ଦେଇପକେଇବିନି କି ?

ଧରଣୀ—ଧୈର୍ଯ୍ୟ, ମୋ କଥା ପଛେ ଅଛି—ମୋର ନ ହେଲେ ବି ଚଳିଯିବ—ଆଗେ ତୁମ କାମଟା ହୋଇଯାଉ ।

ଜନାର୍ଦ୍ଦନ—ସେଇଆ ଏକା କୁହ ହେ ଧରଣୀବାବୁ—ଆଗେ ଆମ କାମଟା ହୋଇଗଲେ ତମ କଥା ଆମେ ବୁଝିଦେବାନି କି ହେ ! ଆମେ ତ ଦଶହଜାର ଟଙ୍କା ଦେଇପକାଉଛି, ଯେମିତି ମିଛେ ଭାବୁଛ ।

ଧରଣୀ—ହଉ, ମୁଁ ରାଜିହେଲି ପାଞ୍ଚବାବୁ, କେବଳ ମୋର ଅନ୍ୟ କାମ ଅଛି । ତୁମ ପାଖରେ ଦଶ୍‌ଦିନ୍ ରହିବାକୁ ବେଳ ନାହିଁ । ଏଇନେ ଯିବି ଅଳ୍ପ କିଏ ଅପିଯାଏ—କଥାଟା ଯଦି ବାହାରିଗଲେ ମୋ ଭୁକଣରେ ତ ଦାଉଟା ବାଜିବ—ଆଉ ତୁମକୁ ଜେଲ୍ ଖଟିବାକୁ ପଡ଼ିବ ।

ଜନାର୍ଦ୍ଦନ—କିପରି ହେଉଛି ହେ ?

ଧରଣୀ—ବୈଦ୍ୟ ଘଟୁ ନବୁଜନ୍ମର କଥା—ଲିଭରକେନ୍ସ କ୍ଷରଅଛି ପୂର୍ଣ୍ଣ ଲୁଳଚନ୍ଦ୍ର—ସ୍ଵପ୍ନରେ ଦେଖି ଛୁଟିଗଲେ ଭେଉ କିଛିପାଅ । ମାଛ ଶୁଖୁଆ ଘର କରି ଧରି ଢୋକନ୍ତି କହୁଛ ? କଥାଟା ପ୍ରଘଟ ହେଲେ ଆଗେ ଆଗେ ହାତକଡ଼ି—ତାପରେ ସିଧା ମାମୁଁ ଘର ।

ଜନାର୍ଦ୍ଦନ—ଛି ଛି ଛି ! ହାତକଡ଼ି ପଡ଼ିଲେ ସୁନାପାଲଙ୍କ କଣ ଦେବନି ହେ । ଯାହା କରିବାର କରୁଥା । ଟଙ୍କାଟା ମୁଁ ଦେଇ ପକେଇବି ।

ଧରଣୀ—ବେଶି କଥା ନ କହି ଟଙ୍କାଟା ଦେଇ ପକାଅ । ଦଶ ଲକ୍ଷ ଟଙ୍କାରେ ପଚାଶ ହଜାର ଟଙ୍କା କେମିତି ଲାଭ ହେବ ତା ବାଟ ମୁଁ ବତେଇ ଦେବି ।

ଜନାର୍ଦ୍ଦନ—ଲାଭ କେଉଁଆଡ଼ ହେବନି କି ହେ ? ତମେ କହୁଚ ଯେତେ-ବେଳେ ଧରଣୀବାବୁ, ତମ କଥା ଉପରେ ଏକା ମୁଁ ଦେଇପକାଉଚି—ହଉ—ନବତ ହେ ।

ଧରଣୀ—(ଗଣିକରି) ଠିକ୍ ଦେଉଛ ତ ?

ଜନାର୍ଦ୍ଦନ—ଦେଇଛି ଧରଣୀବାବୁ । ଏ ଟଙ୍କାରେ ଆମମାନେ ଅମର ରତ୍ନ ଥିବାର । (ଟଙ୍କା ଦେଲେ)

ଧରଣୀ—ସେ କଥା ଆଉ କହିବାକୁ ଅଛି ପାଜବାବୁ, ଟଙ୍କାଟା ଦେଇଦେବା ପରେ ତେଣିକି ବୋଝଟା ମୋ ଉପରେ ନା—ତୁମଙ୍କୁ ଆଉ ଏଥିପାଇଁ ମୁଣ୍ଡ ଖର୍ଚ୍ଚ କରିବାକୁ ପଡ଼ିବନି । ତୁମେ ସିଧା ସିଧା ଘରକୁ ଯାଇ ନାକରେ ତେଲ ମାଲିସ୍ କରି ଶୋଇପଡ଼ ।

ଜନାର୍ଦ୍ଦନ—ତାହେଲେ ତୁମକୁ ଲାଗିଲି—ନମସ୍କାର ! (ପ୍ରସ୍ଥାନ କଲାବେଳେ) କ୍ୟାଣ କହିଲ—ନାକେ ତେଲ ?

ଧରଣୀ—ହିଁ, ଯାଅ ଶୋଇପଡ଼ିବ ! (ଜନାର୍ଦ୍ଦନ ଚାଲିଗଲେ)

ଚମ୍ପା—(ଭିତରୁ) ହଇଏ ଶୁଣୁଚ ! (ପ୍ରବେଶ କରି) ମଲ, ଏଠି ପଲଟଣଟା ପରି ଠିଆହେଉଚ—ମୁଁ ଡାକିଲେ କାନକୁ ଶୁଭୁନି ନା ?

ଧରଣୀ—କାନ ଆଉ ଅଛି ଯେ ଶୁଣିବ ! ସମର ଏ ବମ୍ ଅବାଜ୍ ପଡ଼ୁବେଳେ କାନରେ ଲଗି ଲଗି କାନଟା ସବୁ ଅଡ଼ୁଆ ହେଇଗଲାଣି । ମୁଁ ଠିକ୍ କରିନେଇଚ ନଅ ବୋଲି—ଏଥର ପଲଟଣ ଯାଇ ଓ୍ୱାର ଫ୍ରଣ୍ଟକୁ ଚାଲିଯିବ ।

ଚମ୍ପା—ମିଣିପକୁ ଦେଖ—କୋଉଠିକି ଯିବ ?

ଧରଣୀ—ନେଫା ଫ୍ରଣ୍ଟକୁ—ଅର୍ଥାତ୍ ଯୁଦ୍ଧକୁ ।

ଚମ୍ପା—ମିଣିପକୁ ଦେଖ—ମୈଥ ଯୁଦ୍ଧ ଏ କଥା କହୁଚ ମ ?

ଧରଣୀ—ବଞ୍ଚି ଥାଇ କଣ ଲାଭ ବୋଲି—ବଞ୍ଚିବା ମୋର ସରିଗଲା । ଯିବାକଥା ମୁଁ ପାକାପାକି କରିଦେଇଚି ।

ଚମ୍ପା—ପୁଣି ଗୋଟେ ବାହାର କଲେ ଖେଳକ । ସେ ସବୁ କଥା ପରେ, ଆଗେ ଘରକଥା ବୁଝ ।

ଧରଣୀ—କୁହ !

ଚମ୍ପା—ମିଣିପକୁ ଦେଖ ! ପୁଅଟା କେତେବେଳୁ ଏଯାଏଁ ଚଣ୍ଡେ ଖାଇଦେଇ ବାହାର ଯାଇଚ ଯେ, ଏତେ ବେଳ ହେଲାଣି ଦେଖାନାହିଁ । ବଜାରକୁ ଯିବା ଅସିବ—ଧୋବା ଘରକୁ ଲୁଗା ଦିବ—ଠେଠି ଖଣ୍ଡକ ଭାତରେ ପଡ଼ିବ—ଗାଧୁଆ ଟୋକା ଆସିନ—

ଲୁହାର କାମ ହବ—ବାପନମକା ବୁଢ଼ୀଟା ଭୁଅଡ଼େ ମଲଣି, ସେ କାମ ବାଙ୍କ ପଡ଼ିଚ—ଏସବୁ କଥା ଟିକଏ ହେଲେ ବୁଝୁଚ ?

ଧରଣୀ—ତୁମେ କହି ଥାଅ ଆଜ୍ଞ ଏ ଲୁଚାକ ମୁଁ କାହିଁକ ବୁଝିବ ?

ଚମ୍ପା—ମିଣିପଲୁ ଦେଖ—ମୋର ଜୀବନ ନା ଅଛି କଣ ? ଏ ପାଇଁ ମୋର ମୁଣ୍ଡବୁଣ୍ଡା ବ ହେଲ୍ଣ ।

ଧରଣୀ—ହେଇନ ? ମୁଁ ମୁଣ୍ଡ ଲୁଣ୍ଡେଇ ଦେବ ?

ଚମ୍ପା—ମଲ, ମିଣିପମାନେ କଣ ଏସବୁ କାମ କରୁନାହାନ୍ତି କ ?

ଧରଣୀ—କେଉଁଠି କଏ କହୁଚନ୍ତି ବୋଲି ତୁମର ଏସବୁ ଡୋମେଷ୍ଟିକ୍ ଡିପାର୍ଟମେଣ୍ଟ କଥା ମୁଁ କାହିଁକ ବୁଝିବ ?

ଚମ୍ପା—କଣ କହୁଲ ? ତୁମେଇପେଠ ମୋ କଥା ବୁଝିବ ? ଅଛି ତୁମ ହାତ ଧରଥିଲ କାହିଁକ ? ମିଣିପଲୁ ଦେଖ—ମୁହଁରେ ତ ଅଳ କଥା କହିବାର ବାଇଶି ରହୁନ ?

ଧରଣୀ—ସୁନ୍ଦରୀ ଚମ୍ପାବଟ—ତୁମେ ମୋର ହାତଧରିବା ଏକ ମସ୍ତବଡ଼ ଦୁର୍ଘଟଣା । ବୋଧ ପଡ଼ଉ ଅମ ଜାତକ ମେଳ କରିଥିଲ କେଳାଣି, ସବୁଥିରେ ଅମେଳ ରହିଯାଉଚ ମ । ମୁଁ ଏଥର ଠିକ୍ କରିନେଇଚ— ଅଛି ଏ ହର୍ଡ଼ମ୍ୟାକେଷ୍ଟିପ୍ ସବୁଛନ୍ଦ କରିପାରିବନ ।

ଚମ୍ପା—ମିଣିପଲୁ ଦେଖ ! କଣ କହୁଲ—ଅଛି ସର୍ଭିସ କରିବନ ? କଣ ବ୍ଲେଡ଼କର ପେଟ ପୋଷିବ ?

ଧରଣୀ—ବୁଝିଲ ମହାଦେବଙ୍କ ବୃଷଭ ! ସେଥିପାଇଁ କହୁଚ ସବୁଥିରେ ଅମେଳ ।

ଚମ୍ପା -- କଣ ଯାହା ପାଟିକ ଆସୁଚ କହିଯାଉଚ ? ହେଲେ ପୁଅଟା ଭୁଅଡ଼େ ଗଲ ଦେଖ ମ !

ଧରଣୀ—ପୁଅ ତ କାଲ୍ଲ କରିଚ ଗୋଟାଏ ଉତ୍ପାତ—ବୋଧହୁଏ ଲ୍ୟାଙ୍ଗା ଟୋକାଙ୍କ ସଙ୍ଗତ ଠନ୍‌ପଠନ୍ ଢାପଖେଲରେ ବସିଯାଇଥିବ ।

(ବାହାରୁ ବନ୍ଦଧରି ପ୍ରବେଶ କରିଚ ନତ୍ୟାନନ୍ଦ)

ନତ୍ୟାନନ୍ଦ—ଏ ଲାଲ ଛକ୍କ ....ମଇଦାନ ଖାଲ୍ଲ... ଏ ଖ୍ଖ...ଖ୍ଖ......

ଧରଣୀ—ହଁ ହଁ ଖୁ…ସନ୍ଧ୍ୟା ପର୍ଯ୍ୟନ୍ତ ଜୋଉ ଗଛଟାରେ ଥିଲି ?

ନିତ୍ୟାନନ୍ଦ—ଦେଖିଲ୍ ଦେଖିଲ୍ ବୋଉ, ବାପା କିମିତ ଦଦରଗା କଥାଗୁଡ଼ା କହୁଛନ୍ତି ? ବାର୍ ବାର୍ ସଦ ଏମିତ ବୁଝନ୍ତି ନା—ବୋଉଲେ—

ଚମ୍ପା—ଓ ଲେ…

ନିତ୍ୟାନନ୍ଦ—ମୁଁ ସତ କହୁଚ ତୁମମାନଙ୍କୁ ଗ୍ଲୁଡ଼ ଏ ଫ…ଫ…

ଚମ୍ପା—ଦମ୍ ନେଇ କହ ।

ନିତ୍ୟାନନ୍ଦ—ଏ ଫରେନ୍ ବ୍ଲଡିଡ଼ ।

ଧରଣୀ—ଆଉ ଯନା—ଟିକେଟ ପାଇବୁନ—ଭିଡ଼ ହେଉଥିବ ।

ଚମ୍ପା—ଦେଖିଲ ଦେଖିଲ—ତୁମର ଜାଳାରେ ପୁଅ ମୋର କହୁଚ ଫିରଙ୍ଗ ବ୍ଲଡିଡ଼ । ହସ୍ପିଟାଲରୁ ପଳାଇଲ କି ନାହିଁ—ଲଗେଇ ଦେଲ କଟର କଟର । ଧନ୍ୟ ତୁମ ବାପାପଣିଆ—ମିଣିପକୁ ଦେଖ !

ଧରଣୀ—ହଉ ମା ଜନନୀ, ତୁମେ ତୁମ ପୁଅଙ୍କୁ ନେଇ ବୁଢ—ଆମେ ଗଲୁ ।

ନିତ୍ୟାନନ୍ଦ—ବାପା !

ଧରଣୀ—କଣ ବାପା ?

ନିତ୍ୟାନନ୍ଦ—ମୁଁ କଣ ଖାଲି ଏମିତ ହେଉଚ—ସାର୍ ପଗ୍ର ଅଜ ପଢ଼ଉ-ଥିଲେ—ଏ ଲାଇକ୍ ଫା · ଫା…ଫାଦର୍ ଲାଇକ୍ ସନ୍ (Like father like son. ) ।

ଧରଣୀ—ଏ ନିତଆ, ବାପ ପାଖରେ ଟାହୁଲି କରୁଚୁ ?

ଚମ୍ପା—ମିଣିପକୁ ଦେଖ—ତୁମେ ଏକା ଇଂରେଜ ପଢ଼ିଚ—ମୋ ପୁଅକୁ କଣ ଇଂରେଜ ଆସେନା କି ?

ଧରଣୀ—ସେ ତ ଇଂରେଜ ନୁହେଁ, ସେ କୁହେଚ ବାପ ପ୍ରତି ପୁଅଙ୍କ ଚୂଡ଼ାନ୍ତ ଏକ ଅଗ୍ନିବାଣ !

ନିତ୍ୟାନନ୍ଦ—ବାପା ! ତୁମ ଗାଳିଗୁଡାକ ମୁଁ ସହିନେବି । ହେଲେ ଖାଲି ଦୁଃଖ ହେଉଚ ନେଇବାର—ଉପରଓଳି ଓଡ଼ିଆ ସିନେମା 'ମୃଗନୟନୀ'…

ଧରଣୀ — ଚୁପ୍‌କର ! ଖାଲି ତୁ ମୋ ପୁଅ ବୋଲି ମୁଁ ଚଳେ କିଛି କହୁନି — ନହେଲେ ତୁ ଯାହା ହେଲୁଣି ନା…? ମୋ କୋଟ୍ ପକେଟ୍‌ରେ ସ୍ଲିପ୍ ଖଣ୍ଡେ ରଖିଦେଇ ପାଞ୍ଚଟା ଟଙ୍କା କିଏ ନେଲା ରେ ? ଜଣେ ତୁ ତାକୁ ପାଳି ହିଁବୁ ।

ଚମ୍ପା — ମିଣିପକୁ ଦେଖ ! ହଉଛେ, ସେ ତୁମ ନିଜ ପୁଅ ନା ମାଗିଆଣିଲା ପୁଅ ? ଯାହା ମନକୁ ଆସୁଛି ତାକୁ କହୁଯାଉଛ ?

ଜଗ୍ୟାନନ୍ଦ — ଚୋଲୁଟେଲ, ତୁ କହ — ବାପା ଯଦ ଏମିତି କଥା ପାଳୁଛିବେ ମୁଁ ଯାଇ ହେବି କାହାର ?

ଧରଣୀ — ବୁଝିଲ ନନ୍ଦଆ ବୋଉ — ତୁମ ପୁଅଙ୍କ କୀର୍ତ୍ତି ଶୁଣ ! ପାଞ୍ଚଟା ଟଙ୍କା କୋଟ୍ ପକେଟ୍‌ରେ ଥିଲା । ସକାଳେ ବଜାରକୁ ଯାଇ ଶାଗ୍‌ବାଲାକୁ ପଇସା ଦେବି ବୋଲି ପକେଟ୍‌ରେ ହାତ ପୂରାଇଲି ବେଳକୁ ଟଙ୍କା ତ ନାହିଁ, ତା' ବଦଳରେ ପାଇଲି ଖଣ୍ଡେ ସ୍ଲିପ୍ । ସେ ଶାଗ୍‌ବାଲାଟା ମତେ ବଜାର ମଝିରେ ମାରେ କି ନମାରେ । ସେ ସ୍ଲିପ୍‌ରେ କଣ ଲେଖାହୋଇଥିଲା ଜାଣିଚ ?

ଚମ୍ପା — ମିଣିପକୁ ଦେଖ — ମୁଁ କେମିତି ଜାଣିବି ?

ଧରଣୀ — ନ ଜାଣିବ ଯଦି ଶୁଣ । (ଚିଠି ପଢ଼ନ୍ତି)

ପୂଜ୍ୟପାଦ ପିତୃଦେବ,

ହଠାତ୍ ମିଅଙ୍କ ଚୋକାନୀ କୁତାଟା ରାସ୍ତାରେ ବେଳକୁ ଜଣବାରୁ ଅଗତ୍ୟା ଅନ୍ୟ ଉପାୟ ନପାଇ ଆପଣଙ୍କ ପକେଟ୍‌ରୁ ପାଞ୍ଚଟଙ୍କା ନେଇ ଏ ରସିଦ୍ ଲେଖିଦେଲି ଜ ଦରକାର ବେଳେ କର୍ମରେ ଆସିବ । ଇତି ।

ତୁମର…

ଜଗ୍ୟାନନ୍ଦ — 'ଅଧମ ଜଗ୍ୟାନନ୍ଦ'…

ଧରଣୀ — ଶୁଣ !

ଚମ୍ପା — ମଲଯା, ଏଇଟା ହେଲା କେବେ ? ଏଇଥି ପେଇଁ ଏତେ ରାଗ ? ପୁଅ ବୋଲି ଗୋଟିଏ । ପାଞ୍ଚଟା ଟଙ୍କା ନେଲା ସେ ଖବର ନେଇଗଲା ? ଖୁ ବୁଲରେ ଆମର ନନ୍ଦଆ — ଏପରି କଥାରୁ ଆମକୁ ମିଳିବ କଣ ?

ପାଠ ପଢ଼ାପଢ଼ି ଅଟି ବାକ ବଢ଼ିଯାଇଛି । ବୁଲ, ପାଣିରେ ଭଟ ଟଣ୍ଡେ ଦଣ୍ଡୁ ବୁଲିଲ୍ ।

ନିତ୍ୟାନନ୍ଦ—ହଁ, ବୁଲ୍ ବୋନ୍ଧ ! (ଯାଉ ଯାଉ ଫେରି) ବାପା, ଆପଣଙ୍କର ଗୋଟେ ଲେ···ଲେ···ଲେଟର୍ ଅଛି ।

ଧରଣୀ—କିଏ ଦେଇଛି ?

ନିତ୍ୟାନନ୍ଦ—ଘନେଶବାବୁ ଦେଇଛନ୍ତି, ନିଅ । (ଚିଠି ଦେଇ ପ୍ରସ୍ଥାନ)

ଧରଣୀ—(ଚିଠି ଖୋଲ୍ ଖୋଲ୍) ହେ ମା କଟକଚଣ୍ଡି!, କି ଖବର ଆଣିଛୁ କେଜାଣି ?

ଚମ୍ପା—ମିଶିଯିବୁ ଦେଖ—ପଢ଼ନା—ଭଲ ଖବର ଥିବ ।

ଧରଣୀ—ଶୁଣ । (ପଢ଼ିଲେ)

"ଧରଣୀ !

ଜାଣିବ, ତୁମର ଚିଠି ମୁଁ ପାଇଛି । ଅଙ୍କ ତୁମେ ଯୋଉଟା ବୁଝୁଛ—ମୁଁ ସେଇଟା ବହୁଦିନରୁ ବୁଝିଥିଲି । ଅନେକ ଦିନରୁ ମୁଁ ତୁମକୁ ଏକଥା କହିବାକୁ ଭାବୁଥିଲି, ହେଲେ ସୁବିଧା ପାଇନି । ବର୍ତ୍ତମାନରେ ମୁଁ ପାଇଛି ତୁମର ପୁଷ୍ଟ ବୁଦ୍ଧିର ପରିଚୟ—" (ନିଜଆଡ଼େ ବୋଲିକି) ତୁମେ ଖାଲି ମତେ ନିର୍ବୋଧ ବୋଲି ଭାବୁଛ, ଦେଖିଲ ମୋ ବୁଦ୍ଧିର କେତେ ପ୍ରଶଂସା କରିଛନ୍ତି— ! (ପଢ଼ିଲେ) "ତୁମଭଳି ତୀକ୍ଷ୍ଣ ବୁଦ୍ଧି ସମ୍ପନ୍ନଲୋକ ଏଭଳି ଭଲ ବ୍ୟବସାୟ କରିବା ଉଚିତ ନୁହେଁ" (ସ୍ୱଗତ) ବାଃ—(ପଢ଼ିଲେ) "ସଂସାରରେ ବ୍ୟବସାୟ ତାଳ ଗଛର ଛାଇ । ତୁମ ବୁଦ୍ଧି ଯଦି ବ୍ୟବସାୟରେ ନିୟୋଗ ହୋଇ ପାରନ୍ତା ତୁମେ ଅନେକ ଲାଭବାନ୍ ହୁଅନ୍ତ—ତୁ ଏବେ ଧନେ ହୋଇ ପାରନ୍ତ ମୋର ଭଳି ଲକ୍ଷପତି ।" (ନିଜଆଡ଼େ ବୋଲିକି) ଶୁଣୁଛ—ଶୁଣୁଛ ?

ଚମ୍ପା—ମଲଯୋଉ, ଶୁଣୁନାହିଁ ଆଉ କଣ ?

ଧରଣୀ—ଶୁଣ ଶୁଣ, ଭଲକରି ଶୁଣ । (ପଢ଼ିଲେ) "ତୁମେ ବ୍ୟବସାୟ ଆରମ୍ଭ କର ଧରଣୀ—ମୋ ଔଷଧ ତିଆରି କାରଖାନାର ଦ୍ୱାର ତୁମପାଇଁ

ଉନ୍ନତି । ଦାସ୍ କେମିକାଲ୍ ଇନ୍ଷ୍ଟିଚ୍ୟୁଟରେ ତୁମକୁ ମୁଁ ଅସିଷ୍ଟାଣ୍ଟ୍ ମ୍ୟାନେଜରରୂପେ ନିଯୁକ୍ତ କଲି । ଦରମା ମାସିକ ପଚାଶଟଙ୍କା । ପତ୍ର ପାଇବା ମାତ୍ରେ କାମରେ ଯୋଗଦିଅ । ତୁମର ଉଲ୍ଲମନ ସବୁ ମୁଁ ବୁଝିବି । ଇତି ।

ତୁମର

ଗଣେଶ ଦାସ"

ଏଠିକା ଦରମାଠାରୁ ଶହେଟଙ୍କା କେଶି—ନିଚ୍ଛଅଦୋଷ—ଆମର ସ୍ୱର୍ଗ ନେଉଛନ୍ତି ଶିବ । (ଖୁସିହୋଇ ଚମ୍ପାକୁ ଧରିବା ବେଳେ ନିତ୍ୟାନନ୍ଦର ପ୍ରବେଶ)

ନିତ୍ୟାନନ୍ଦ—କୋଉଁଠେ···(ଲଜ୍ଜରେ ପ୍ରସ୍ଥାନ)

## ତୃତୀୟ ଦୃଶ୍ୟ—

[ନଗୁଚିଅ ପ୍ରାନ୍ତର । ସନ୍ଧ୍ୟା ପରେ ସମସେର୍ ଅଛି ଗଛମୂଳେ ଅମୀନାର କବର ପାଖରେ ବସି କାନ୍ଦୁଛି । ଭିତରୁ ଭିକାରୀର ଗୀତ ଶୁଣାଯାଉଛି । ]

—ଗୀତ—

ମାଟିର ମମତା ନେଇ ମାଆ କୋଳେ
ଶୋଇଛୁ କେଁ ଅଲ୍ଲଭଲି କେମା
ବାପର ସବୁର ଡ଼ାକ ବାଜିବନି ଅନ୍ଧ ତା କାନେ
ଫେରଯା ଲୁ ଫେରଯା ।

ସମ୍ସେର—ଅମୀନା ! (ଗୀତ ଶେଷରେ)ବେଟୀ ଅମୀନା— ! ବୁଢ଼ା ବାପ ଉପରେ ଏତେ ନାରାଜ୍ କାହିଁକି ? ଅ: ଖାଇବୁ ଅ:—ଏଇ ଦେଖି ନବାବ୍ ଖା—ମିଠେଇ ଖା । ମୁଁ ଅସୁ ଅସୁ ତୁ ଘୁମୁଖା ହେଇଗଲୁ—?

ଖାଉଥିଲ ? ଅମୀନା—ଆ ବେଟି—ନାସ୍ତା କରିବା ଆ—। ତୋ ପାଇଁ ବଜାରରୁ କେତେ ଜିନିଷ ଆଣିଛି—। ତୁ ନ ଖାଇଲେ ମୁଁ ଖାଇବିନି—ଏଁ —କଣ କହୁଚୁ ତୁ ? ଖାଇବୁନି—ଆସିବୁନି—? ବେଟୀ ଅମୀନା !

ଲ୍ୟୁଟ୍—(ପ୍ରବେଶ କରି) ବୁଦ୍ଧୁ ! କଣ ଏମିତ ପାଗଳଙ୍କ ଭଳି ହଉଚୁ ? ତୁ ଏମିତ କାନ୍ଦ କାନ୍ଦ ହମରି ଟେଟେଇ ଦେଲେ ବ ସେ କଣ ଆଉ ଆସିବ ?

ସମସେର୍—ଚୁପ୍—ଚୁପ୍—ତୁ ମେରି ଦୁସ୍ମନ୍ ହୋ । ସେ କଥା କହନା । ତୋର ଜାନ୍ ନେଇଯିବି—କହୁଚି କଣ ନା ସେ ଆସିବନି ! ଅଲବତ୍ ଆସିବ—ଦେଖ ଅନ୍ଧା—ଏ ମାଟି ଭିତରେ କିଏ ଶୋଇଚୁ ଦେଖ୍ !

ଲ୍ୟୁଟ୍—ତୁ ଏମିତ ବକ ବକ ପାଗଳ ହେଇଯିବୁ ବୁଦ୍ଧୁ !

ସମସେର୍—ଲ୍ୟୁଟ୍, ଏଇ ମାଟି ତଳେ ବେଟୀ ମୋର ବେଶ୍ ଆରାମରେ ଶୋଇଚି—ଦେଖୁନୁ, କସୁରି କେମିତ ? ତା ମା ଠିକ୍ ଏମିତ ହସୁଥିଲା—ଦେଖ୍ ଲ୍ୟୁଟ୍—ଆଖି ପୂରେଇ ଦେଖ୍ ।

ଲ୍ୟୁଟ୍—ଚାଲ, ବୁଦ୍ଧୁ ଘରକୁ । କେତେ ଦିନ ଏମିତ ନ ଖାଇ ରହିବୁ ?

ସମସେର୍—ଘରକୁ ? ମୋର ଆଉ ଘର ଅଛିକି କୋଉଠି ଲ୍ୟୁଟ୍ ? ଘର ଯାଇଚି—ତା ସହିତ ମୋର ଅମୀନା ବେଟୀ—ମୋର ଜାନ୍ ବି ଚାଲିଯାଇଚି । ମୁଁ ଆଉ କୋଉଠିକି ଯିବିନି ।

ଲ୍ୟୁଟ୍—ଆଉ କଣ ଏଇଠି ବସି ଜୀବନଟା ବିତେଇ ଦବୁ ?

ସମସେର୍—ଏ ଜାଗା ମୁଁ କେମିତ ଛାଡ଼ି ଯିବି ? ତୁଆଟା ଏଇଠି ଶୋଇଚି । ତାକୁ ଏକା ଏକା ଡର ଲାଗିବନି ? ମୁଁ ପାଖରେ ଥିଲେ ତାର କେତେ ହିମ୍ମତ୍ !

ଲ୍ୟୁଟ୍—ବୁଦ୍ଧୁ, ତୁ ଖାଲି ମିଛଟାରେ କାନ୍ଦ କାନ୍ଦ ଆଖି ଫୁଲେଇ ଦେଲୁଣି—ହେଲେ ତୋର ଏ କଥା ଶୁଣୁଚି କିଏ ?

ସମଦେର୍—କେଉଁ ଶୁଣୁନ ? ଓଃ ଟା—ସବୁ ସେ ଶୁଣୁଚ । କୁଅଁଟା ଖର ସ୍ୱଳ୍ପ୍ । ତାହାପାଇଁ ମୁଁ ଧାଇଁଥିଲି ଉତ୍କଳ ପାଖକୁ । ହେଲେ ସେ ମୋ କଥା ଶୁଣିଲା ନାହିଁ । ସଇତାନ୍—ସେଇଟା ଗୋଟେ ସଇତାନ୍ ।

ଲଂଟୁ—ଗଣ୍ଡବର ନଷ୍ଟ ଚପି ସେମାନେ ବଢ଼ିଲେଣି ହେଉଚନ୍ତି—ଆମ କଥା ସେମାନେ ଶୁଣିବେନ—ସେମାନଙ୍କ ମଗଜଟା ଗରମ ।

ସମଦେର୍—ହେଲେ ଲଂଟୁ—ସେ ଗରମ ମଗଜଟାକୁ ମୁଁ ଥଣ୍ଡା କରିଦେବ—ଉତ୍କଳର ଜାନ୍ ନେଇଯିବ ।

ଲଂଟୁ—ପାରିବୁନି—ତୋ ହାତରେ ସେ ବଳ ନାହିଁ ସୁଦ୍ଧା—ତୁ ଉତ୍କଳର କିଛି କରିପାରିବୁନି ।

ସମଦେର୍—ଜରୁର୍ ପାରିବ ଲଂଟୁ—ରହ—ସବୁର୍ କର ।

ଲଂଟୁ—ଚଳ୍ ଚଳ୍, ବସ୍ତିବାଲା ସବୁ ମେଳାକୁ ଚାଲିଗଲେଣି । (ଟାଣିଲା)

ସମଦେର୍—ଲଂଟୁ ! ଉତ୍କଳ ମେଳାକୁ ଆସିବ ? ଅର୍ଚ୍ଚନା ବେଟୀ ମେଳାକୁ ଆସିବ ?

ଲଂଟୁ—ହଁ, ଅର୍ଚ୍ଚନା ମେଳାକୁ ଆସିବ—ତାକୁ ସେଇଠି ସବୁ ଖାଇବାକୁ ଦବୁ ।

ସମଦେର୍—ଚଳ୍, ଉତ୍କଳ ମୋ ଅର୍ଚ୍ଚନାକୁ ମୋ ପାଖରୁ ଛଡ଼େଇ ନେଇଚୁ—ମୋର ଜାନ୍‌କୁ ନେଇ ଯାଇଚୁ । ମୁଁ ତାର ଜାନ୍ ନେଇନେବ ।

## ଚତୁର୍ଥ ଦୃଶ୍ୟ—

[ ଧରଣୀ ଘରର ଅଗଣା । ଘର ଭିତରକୁ ପ୍ରବେଶ କଲେ ନିତ୍ୟାନନ୍ଦ ଓ ଚମ୍ପାବତୀ । ନିତ୍ୟାନନ୍ଦ ପୁଟ୍‌କୋଣ୍ଟାଏ ଧରିଚ । ]

ନିତ୍ୟାନନ୍ଦ—ନା-ନା—କହିଲି ପରା ଏ ଘର ଆଉ ମୋତେ ସୁଟ୍ କରୁନି । ଏଠି ଥଣ୍ଡା ନାହିଁ—ଗରମ ନାହିଁ—ପଙ୍ଖା ନାହିଁ—ଆଲୁଅ ନାହିଁ—ପାଣି ନାହିଁ—ପବନ ନାହିଁ ।

ଚମ୍ପା—ନିତିଆ ! ତୁ ମୋ କଥା କିଛି ଶୁଣ ଭଲ ! ତୋ ବାପା ଆଜି ଆସନ୍ତୁ, ତାଙ୍କୁ କହି ଦେବୁ ମୁଁ ଏଇଠି ଚଳିଦେବ । ଛି, ଛି, ଛି—ଏ ଘରେ ମଣିଷ ରୁହନ୍ତେ ?

ନିତ୍ୟାନନ୍ଦ—ସେଇଆ କହୁ ବୋଉ—କେତେ ପଇସା ରୋଜଗାର କଲେ ବାପା ଆମର ଭଲ ଘରଟାଏ କରିବେ ? ଭଲ ଘର ସବୁକୁ ଭଡ଼ାରେ ଲଗାଇ ନିଜେ ରହୁଛନ୍ତି କୋଉ ମାନ୍ଧାତା ଆମଳ ଘରେ । ମୁଁ ଯେତେ କହୁଛି ବୋଉ, ଏ ଘର ମତେ ଆଉ ସୁଟ୍ କରୁନି । ମୁଁ ଚାଲିଯିବି ହୋଟେଲ୍‌କୁ ।

ଚମ୍ପା—ହଇରେ ନିତିଆ, ଘରେ ବାପା ବୋଉ ଥାଉ ଥାଉ ତୁ ଯାଇ ରହିବୁ ହୋଟେଲ୍‌ରେ ? ଲୋକେ କଣ କହିବେ ?

ନିତ୍ୟାନନ୍ଦ—ଛାଡ଼ ବୋଉ—ଲୋକେ କହୁନାହାନ୍ତି ଯେ ଆଉ ନୂଆ କଣ କହିବେ ? କହି କହି ନାମଟା ଛଡ଼େଇ ଦେଲେଣି । ବାପାଙ୍କ ଅପକର୍ମ ଗୁଡ଼ାକ ଯୋଗୁଁ ଆଉ ମୁହଁ ଟେକି କଣ ବାହାରେ ବୁଲି ହଉଛି ?

ଚମ୍ପା—କରେ, ତୋ ବାପା ତ ସରକାରୀ ଚାକିରୀ ଛାଡ଼ି ଓକିଲ ଘର ମୁନସୀ ଧରିବାଠୁ ଘର ଅବସ୍ଥା କିଛିଏ ସୁଧୁରି ଯାଇଛି !

ନିତ୍ୟାନନ୍ଦ—ବୋଉ, ତୁ ତ ରହିଲୁ ଘର ଭିତରେ, ବାହାର କଥା ତୁ ବୁଝିବୁ କୋଉଠୁ ! ବାହାରେ ଯେ ପ୍ରେଷ୍ଟିଜ୍ ଲିକ୍ କଣ କେତେ ବାଟକୁ ଗଲାଣି—

ଚମ୍ପା—କରେ କଣ ହେଉଛି କି ବାହାରେ ?

ନିତ୍ୟାନନ୍ଦ—କୋଉଠି ଅଛି ବାପାଙ୍କର ପ୍ରେଷ୍ଟିଜ୍ କହୁଛୁ ? ଗୁରୁ ପିଅନ ଦୋକାନ ବୁଲାଟା ମୋ ଉପରେ—ବୋଉ ଲୋ...

ଚମ୍ପା—ଓ ଗେ !

ନିତ୍ୟାନନ୍ଦ – ସତର ଟଙ୍କା ପଇଁତ୍ରିଶ ପଇସା ବାକି ଅଛି ସେ ମୋତେ ନୋଟିସ୍ ଦେଇଦେଇଛ ।

ଚମ୍ପା—କଣ ଦେଇଛ ?

ନିତ୍ୟାନନ୍ଦ—ଏ ନୋ…ନୋଟିସ୍—ନୋଟିସ୍ ଦେଇ ଦେଇଛ ! ଅଙ୍କ ଭିତରେ ଟଙ୍କା ନ ପାଇଲେ ମତେ ବାଟରେ, ଘାଟରେ, ନଦୀରେ, ଆକାଶରେ, ଚନ୍ଦ୍ରସୂର୍ଯ୍ୟରେ, ମଙ୍ଗଳ ଗ୍ରହରେ—ଯୋଉଠି ଦେଖିବ—ବେକରେ ଗାମୁଛା ପକେଇଦେବ । ଏଇଥିରୁ ବୁଝନ୍ତୁ, ବାପାଙ୍କ ଉପରେ କାହାର ଆସ୍ଥା ନାହିଁ ।

ଚମ୍ପା—ହରିରେ ନାଥ—ଏଇ କଥାକୁ ଏତେ ଭୟ ?

ନିତ୍ୟାନନ୍ଦ—ବୁଝିଲ୍ ବୋଉ—ବାପାଙ୍କର ପ୍ରେଷ୍ଟିଜ୍ ଥିଲେ ସେ ପିଅନ୍ଜ ବୋକାନାଟା ମତେ ଏମିତି କହିଆନ୍ତା ? ମୁଁ ସେତେ କହିଲି ବାପାଙ୍କଠୁ ଟଙ୍କା ଆଣି ଦେଇଦେବି—ମତେ ସାତ ଅଠଦିନ ମହଲତ୍ ଦେ— ସେ ମୋଟେ କାହିଁକି ଶୁଣିବ ! ଓଲଟି କହୁଛି, ତୁମେ—ବାପପୁଅ ଦୁହେଁ ଯାକ ଧ…ଧ…ଧପ୍ପାବାଜ୍ ।

ଚମ୍ପା—ହଁ !—? ଏତେ ବହପ ତାର ? ମୋ ପୁଅକୁ ସେ ଏକଥା କହିବ—କାହିଁକି ? କଣ ହେଲା କି ? ତାକୁ କଣ୍ଠା ଖାଇଦିଅନ୍ତ !

ନିତ୍ୟାନନ୍ଦ—ଅବସ୍ଥା ସଙ୍ଗିନ୍—ତେଣୁ ମୁଁ ଏଠି ରହି ପାରିବନି । ହୋଟେଲକୁ ଯାଉଛି—ବାପାଙ୍କୁ କହି ହୋଟେଲ ବିଲ୍ଟା ମାସକୁ ମାସ ପଠେଇଦେବୁ ।

ଚମ୍ପା—ଏଇଥିପାଇଁ ତୁ ହୋଟେଲକୁ ଯିବୁ ? ସତର ଟଙ୍କା ପଇଁତ୍ରିଶ ପଇସା ତୁ ଆଣି ନେଇ ସେ ହାରାମଜାଦା ବୋକାଟାକୁ ଦେଇଆ ।

ନିତ୍ୟାନନ୍ଦ—ତୁ ଟଙ୍କା ଦବୁ ?

ଚମ୍ପା—ହଁ ଦେବି । ସତର ଟଙ୍କା ପାଇଁ ମୋ ଅଂରେଜି ପଢୁଆ ପୁଅର ସମ୍ମାନ ଯାଇଯିବ ? ମୁଁ ମା ହୋଇ ଏ କଥା ଦେଖିବି ?

ନିତ୍ୟାନନ୍ଦ—ବୋଉ ! ଏଇ ଟଙ୍କାଟା ଦେଇ ଦେଲେ ନା ମୁଁ ଆଉ କୁଆଡେ ଯିବିନି ।

ଚମ୍ପା—ସତ କହୁଚୁ ଯିବୁନି ତ ? ମୋ ମୁଣ୍ଡ ଖାଉଚୁ ?

ନିତ୍ୟାନନ୍ଦ—ହଁ ବୋଉ, ତୋ ମୁଣ୍ଡ ଛୁଇଁଚି ।

ଚମ୍ପା—ହଉ ଶୁଣ୍, ମୁଁ ଟଙ୍କା ଦେବି ।

(ଦୁହିଁଙ୍କର ପ୍ରସ୍ଥାନ—ନିତ୍ୟାନନ୍ଦ ଫେରିଲା)

ନିତ୍ୟାନନ୍ଦ—(ଟଙ୍କା ଗଣି) ବୁଢ଼ା ଦୋକାନୀକି ପାଞ୍ଚଟଙ୍କା ପଇଁ ତ୍ରିଶ ଦେବା ପରେ ଦ ରେଷ୍ଟ ଏମାଉଣ୍ଟ ଏ ପ୍ର...ପ୍ର...ପ୍ରଫିଟ । ଲଙ୍ଗ୍ ଲିଭ୍ ମଦର୍ ! (ପ୍ରସ୍ଥାନ)

(ବାହାରୁ ଧରଣୀର ପାଟି ଶୁଭିଲା)

ଧରଣୀ—ଅରେ ମତେ ଛାଡ଼—ଛାଡ ! (ପ୍ରବେଶ କଲେ ଧରଣୀ ଓ ଜନାର୍ଦ୍ଦନ)

ଜନାର୍ଦ୍ଦନ—ଆଜି ତୁମକୁ ଛାଡ଼ିବିନି ହେ—ତମେ ଗୋଟେ ଭଦ୍ରଲୋକ—ମୋ କଣ ନାଶ କରିଦେଲଣି ହେ । କାମଟା କରିଦେବ ବୋଲି ସମାନେ ପାଞ୍ଚହଜାର ଟଙ୍କା ତମ ହାତରେ ଦେଲି ।

ଧରଣୀ—ମୋ ହାତରେ ପାଞ୍ଚହଜାର ଟଙ୍କା ଦେଲ ? କାହିଁକି ? କଣ ପାଇଁ ? .ଜଲ୍ଦି ଜଲ୍ଦି କୁହ—ନ ହେଲେ ମୁଁ ପୋଲିସ ଡାକୁଚି—ବାପଧନ ! ଘୁଷ୍ ଦବାଟା ଯେତିକି ଦୋଷ, ଦବାଟା ତତୋଽଧିକ । ପୋଲିସ ଆଗରେ କହିବ—ତୁମେ ମତେ ଘୁଷ୍ ଦେଇଚ ?

ଜନାର୍ଦ୍ଦନ—ହଇଏ ଧରଣୀବାବୁ ! ଏଇ ଜାଗାରେ ମୁଁ ତୁମକୁ ଏକା ପାଞ୍ଚହଜାର ଟଙ୍କା ଦେଇପକେଇଲି ବଡ଼ ପାଇବାକୁ କହି ମୋ ଭଣ୍ଡାକ୍ଟୁ କାମଟା କରେଇଦେବ ବୋଲି !

ଧରଣୀ—ଡାହାକୁ—ଡାହାକୁ—ବଡ଼ ଘାହେବକ୍କୁ ? ହେ ଭଗବାନ୍—ଭାଞ୍ଚ ଧର୍ମପ୍ରା ଲୋକ—ସାକ୍ଷାତେ କଳ୍କିଙ୍କର ଅବତାର ! ମାଛିକି ମ

ବୋଲି କ୍ରନ୍ଦନ—ପଇସା ପାଖ ପଟନ୍ତ୍ରନ—ଘୁଷ୍ ନେବାରେ ବଡ ଧାନ୍ଦେବନ୍ତି ଯୋଡ଼ିଦଉଚ ?

ଜନାର୍ଦ୍ଦନ—ଆମକୁ କ୍ୟାଣ ଲେଡ଼ା ହେ ? ସମାନେ ମୋ ଟଙ୍କା ଦେଉପଡ଼ ।

ଧରଣୀ—ବୁଝିଲ ଯାଦେ—ତୁମପରି କମ୍ପିଉ ଓଁ ମାନ୍ ଫୁଲ୍ ବିଶ୍ୱ-ବ୍ରହ୍ମାଣ୍ଡରେ ନାହାନ୍ତି । ହଉଛେ, ଟଙ୍କା ନଏ ମୁଁ କଏ ? ମୋର କଣ ଦରକାର ? ଦୁଃଖେ ସୁଖେ ମୁଁ ଚଳିଯାଉଚି—ମୁଁ କାହିଁକି ଏ ଫନ୍ଦ ଫିକର ଭିତରେ ପଶିବି ? ମୁଁ କାହିଁକି ତମ ଟଙ୍କା ନେବି ହେ ?

ଜନାର୍ଦ୍ଦନ—ଖାଏ ବେଲେ ? ତୁମେ ଗୋଟେ ଧପ୍ପାବାଜ ।

ଧରଣୀ—ଏ—ମୂର୍ଖ ସମ୍ଭାଳି କଥାବାର୍ତ୍ତା କର ! ମୁଁ ଧପ୍ପାବାଜ ? ଅଚ୍ଛା ତୁମଭଳି ଘୁଷ୍‌ଖୋର୍, ଲାଞ୍ଚଖୋର୍ ଲୋକଙ୍କୁ ତାଙ୍କ ଯେ ଶାସନ ଭିତରେ ପଶି ଶାସନକୁ ବଦ୍‌ନାମ କରିବାକୁ ବସିଲଣି ! ତୁମକୁ ସବୁ ହାତକଡ଼ି ଦରକାର । ଆରେ ଦେଶଟା ଯାଇ କୋଉଠି ପହଞ୍ଚିଲଣି !

ଜନାର୍ଦ୍ଦନ—ଆମକୁ ହାତକଡ଼ି ଦେବ କହେ ଧରଣୀବାବୁ ! ଆମକୁ ଘୁଷ୍ ଦେବାକୁ କଣ ଖୁସି ଲାଗୁଥିଲା କି ହେ ?

ଧରଣୀ—ଖୁସି ଲାଗୁନ ତ ଘୁଷ୍ ଦଉଚ କାହିଁକି ? ଠକଠାକ କାମ କରୁନବ ବୋଲି ତ ଘୁଷ୍ ଦଉଚ ?

ଜନାର୍ଦ୍ଦନ—ଧରଣୀବାବୁ ! ସେ ସବୁ ବଡ଼ ବଡ଼ କଥା ରଖ ହେ । ମୁଁ ସଫା ସଫା ପଚାରୁଚି ଆମ ଟଙ୍କାଟା ଆମକୁ ଦେଇଯିବ କି ନା ?

ଧରଣୀ—ମୁଁ କି ଟଙ୍କା-ଫଙ୍କା ଜାଣେନି ।

ଜନାର୍ଦ୍ଦନ—ଭଲାହେବନି କହୁଚି ଧରଣୀବାବୁ ! ଏ କଟକ ସହରରେ ଦଶବର୍ଷ ଆମେ ରହୁଚୁ—ଆମକୁ କ୍ୟାଣ ଡରେଇବ ହେ ?

ଧରଣୀ—ଯାଃ, କଟକ ସହରରେ ଦଶବର୍ଷ ରହିଲଣି ! ମୁଁ ମୁଧ କଟକ ଅଛୁ—ଜାଣୁ ? ପିଟିକରି ସାବାଡ଼ କରିଦେବି ।

ଜନାର୍ଦ୍ଦନ—ମର୍ଦ୍ଦ ଭୁ ଜଗଦେବ—ପ୍ରାଣକୁ ବାଧିଲଣି—ସମାନେ ପାଞ୍ଚ ହଜାର ଟଙ୍କା ଦେଉପଡ଼—ନ ହେଲେ—ଜାଣିଚନା କେତେ

ପାଣିବାର ଅଣ୍ଡିଏ—ସମାନେ ରେଳ ପୋଲରେ ବେକ ଦେଖେଇ ସୁଇସାଇଡ଼ କରିଦେବ । ନୋଇଲେ...

ଧରଣୀ—ନ ହେଲେ ? କଣ କରିବ ?

ଜନାର୍ଦ୍ଦନ—କଣ କରିବ ? ଦେଇପକ ହେ—ଜଲଦି ଛାଡ଼ିଦିଅ । (ବେକରେ ସ୍ୱରେ ପକେଇ)

ଧରଣୀ—ଅରେ ସେ କଣ ? ଯୁଣ୍ଡାମି ଆରମ୍ଭ କରୁଚ ? ପୁଲିସ୍—ପୁଲିସ୍—(ଚମ୍ପା ଝାଡ଼ୁ ଧରି ପ୍ରବେଶ କଲା)

ଚମ୍ପା—କରେ ଯୋଗିଜାଣିଅ—ଭୂତା କଏରେ ?

ଜନାର୍ଦ୍ଦନ—ବାବାରେ, ମାରିପକେଇବ ଏଠା ! (ଛାଡ଼ିଦେଇ) ଧରଣୀ ବାବୁ, ଟଙ୍କାଟା ପଠେଇଦେବ ହେ । (ପ୍ରସ୍ଥାନ)

ଧରଣୀ—ତୁମେ ମତେ ବଞ୍ଚେଇଦେଲ ସୁନ୍ଦରୀ ଚମ୍ପାବତୀ !

ଚମ୍ପା—ମିଣିପକୁ ଦେଖ !

(ଧରଣୀ ଚମ୍ପାକୁ ଝୁଣ୍ଡିଲେ ପ୍ରେମଭରା ଦୃଷ୍ଟିରେ)

## ପଞ୍ଚମ ଦୃଶ୍ୟ—

[ମହାନଦୀ ତଟରେ ଦାଲିଯାତ ମେଳା—ସମୟ ସନ୍ଧ୍ୟା—ବହୁଲୋକଙ୍କ ସମାଗମ—ଦୂରରେ ଦେଖାଯାଉଚି 'ମେଣ୍ଢ ଗୋ ବଣ୍ଡେ' । ବେଲୁନ, ପେଁକାଳ ବଜାଇ ମେଲାସ୍ଥାନକୁ ସରଗରମ କରୁଛନ୍ତି । ଗଣେଶ ଦାସ, ଅରୁଣା ଓ ଧରଣୀ କଥାବାର୍ତ୍ତା ହୋଇ ପ୍ରବେଶ କଲେ ।]

ଗଣେଶ—ବାସ୍ତବିକ ଧରଣି, ଏଇ ଅରୁ ପାଇଁ ମୋର ସବୁ ଜଞ୍ଜାଳ ! ତାର ଖୁସିରେ ମୋର ଖୁସି । ତୁମେ ତ ଜାଣ ତାକୁ ମୁଁ କପରି ସ୍ନେହ କରେ ! ଅଚ୍ଛା, ତୁମେ ତାହେଲେ କାଲି କଲିକତା ଯାଉଚ ?

ଧରଣୀ—ଆଜ୍ଞା ! ଥାନାରେ କେତେ ଟଙ୍କା ନେବ ? ତା ଛଡ଼ା ଇନକମ୍‌ଟ୍ୟାକ୍ସ କାଗଜପତ୍ର ସବୁ ଥାନାରେ ନବାକୁ ପଡ଼ିବ ତ ?

ଦିନେଶ—ହଁ, ମୁଁ ସବୁ ଫାଇଲ୍ ରେଡ଼ି କରି ରଖିଛି । ତମେ ଯାଇ ଖାଲି ଇନକମ୍‌ଟ୍ୟାକ୍ସ ଅଫିସରଙ୍କ ଥାନାରେ ଦେଖାଇଦେଲେ ସବୁ ଜଷ୍ଟିଡ଼ି ହୋଇଯିବ । ଥାନାରେ ପାଞ୍ଚ ହଜାର ଟଙ୍କା ନେଇଯାଅ । ଆଉ ଯଦି ଦରକାର ପଡ଼େ ମୋ ନିକଟକୁ ଫୋନ୍ କରିବ ।

(ସେମାନେ ବୁଲିଗଲେ—ଅରୁଣା ଆସିଲା । ସମସେର୍ ତାକୁ ଖେଳନା ଦେବ ବୋଲି କହି ନେଇଯାଉଛି ।

ଧରଣୀ—ତାହେଲେ ବୁଲିକୁ ଆଜି ଯିବା । ଅରୁ ଦେଇ କୁଆଡ଼େ ଗଲେ ?

ବଶିଆ—(ପଛକୁ) ବାବୁ ! ଅରୁଦେଇ କୁଆଡ଼େ ଗଲେ ?

ଦିନେଶ୍—(ଏଆଡ଼େ ସେଆଡ଼େ ଚାହିଁ) ଅରୁ—ଅରୁ ଗାଡ଼ି ପାଖରେ ଥିଲା !

ବଶିଆ—ସେଠି ନାହାନ୍ତି ତ ଆଜ୍ଞା ! ଏଇଆଡ଼େ ଥିଲେ । ମୁଁ ଚାରିଆଡ଼େ ଖୋଜିଲିଣି—ହେଲେ ପାଇନି ।

ଦିନେଶ—ତାହେଲେ କୁଆଡ଼େ ଗଲା ? ଧରଣୀ, ଚାଲ ଦେଖିବା । ତୁ ଯା ସେପାଖେ ଦେଖ—ତାକୁ ଖୋଜି ଆଣ ।

( ଦୁହିଁଙ୍କର ପ୍ରସ୍ଥାନ । ପରେ ପରେ ଦେଖାଗଲା ସମସେର୍ ଖଣ୍ଡେ ଖେଳନା ଘୋଡ଼ାଇ ଅରୁଣାକୁ ଭିଡ଼ ଭିତରେ ଟେକି ନେଇ ଚାଲିଗଲା । )

Announcement—Attention please ! Attention please—ଏ ମେଳାରୁ ଓକିଲ ଦିନେଶ ଦାସଙ୍କର ୭।୮ ବର୍ଷର ଝିଅ ହଜିଯାଇଛି । ମୁଣ୍ଡରେ ତାର ଏକ ଲାଲରିବନ୍ ଅଛି—ଖଣ୍ଡେ ନାଲି ଫ୍ରକ୍ ପିନ୍ଧିଛି—ରଙ୍ଗ ଗୋରା—ହାତରେ ଚୁଡ଼ି । ନାଁ ହେଉଛି 'ଅରୁଣା'—ଯଦି କେହି ଭଦ୍ରବ୍ୟକ୍ତି ତାକୁ ପାଆନ୍ତି ତାହେଲେ ସନ୍ଧାନ ଦେବେ । ତାଙ୍କୁ ଉପଯୁକ୍ତ ପୁରସ୍କାର ମିଳିବ ।

## ଷଷ୍ଠ ଦୃଶ୍ୟ—

[ ଧନେଶ ବାବୁଙ୍କ ଘରର ଅଳନ୍ଦ । ଅନ୍ଧୁଆର ଘଟେ । ବାହାରିଥିବା ଖବର କାଗଜ ଖଣ୍ଡେ ଧରି ଧନେଶ ବାବୁ ବ୍ୟସ୍ତ ହେଉଛନ୍ତି—ବଣିଆ ବୁଝାଉଛି । ]

ବଣିଆ—ବାବୁ, ଖ୍ୱ ଆଣିବ ?

ଧନେଶ—ନା !

ବଣିଆ—ବାବୁ, କଣ୍ଟ ହେଲେ ଟିକେ ଖାଅ ! ଏମିତ ନ ଖାଇ ନ ପିଇ କେତେ ଦିନ ଚଳିବ !

ଧନେଶ—ବଣିଆ, ମା ଛେଉଣ୍ଡ ପିଲଟା—ମେଲାରୁ ଯେ ଭୁଅଡ଼େ ଗଲ ? କେତେ ଅଲିଅଳରେ ବଢ଼ିଥିଲ ରେ ! ଆଜି ସେ କୋଉଠି ଯାଇ ଗଛ ମୂଳରେ କି ରାସ୍ତା କଡ଼ରେ ଆଶ୍ରୟ ନେଇଥିବ !

ବଣିଆ—ବାବୁ ! ଥାନାବାବୁ କହୁଥିଲେ—ଅରୁ ମା ଆମର ନିଶ୍ଚୟ ମିଳିବେ ।

ଧନେଶ—ଅରୁ ମୋ ବଂଶର ଶେଷ ସନ୍ତକ । ସେଦିନର କଥା କଣ ତୋର ମନେପଡ଼ୁନି ବଣିଆ ? ସେ ଦିନ—ସେ ରାତି—ଅମାବାସ୍ୟାର ଘନ ଅନ୍ଧାର—ଝୁଣଅଡ଼େ ବର୍ଷା ବାଦଲର ଘନଘଟା—ପାଇଁ ପାଇଁ ପବନ—ଅରୁର ଜନ୍ମଦିନରେ ତା ମାର ସେ ଯେଉଁ ଅବସ୍ଥା—

ବଣିଆ—ସବୁ ମୋର ମନେଅଛି ବାବୁ—ଏ ଘରର କୋଉ କଥା ମୁଁ ନ ଜାଣେ ?

ଧନେଶ—ଅରୁ ମାର ଇଚ୍ଛା ଥିଲା, ଅରୁକୁ ସେ ଖୁବ୍ ଅପ୍‌ଟୁଡେଟ୍ (up-to-date) କରି ଗଢ଼ିବ । ତାକୁ ଦେବ କଲେଜ ଏଡୁକେସନ । ହେଲେ ଏସବୁ କଣ ହେଇଗଲା ରେ ବଣିଆ ! ଅରତ ଆଜି ସ୍ୱର୍ଗପୁରରେ ଥାଇ କଣ ଭାବୁଥିବ ଜାଣୁ ?

ବଣିଆ—ବାବୁ !

ଧନେଶ—ସେ ଭାବୁଥିବ, ତାର ରକ୍ତମାଂସରେ ଗଢ଼ା ଶିଶୁଟିକୁ ଯାର ତତ୍ତ୍ୱାବଧାନରେ ଦେଇ ସେ ଆଖି ବୁଜିଥିଲା, ସେ ଗୋଟେ ଅପଦାର୍ଥ ।

ଅଳୁକୁ ମୁଁ ରଖି ପାରିଲିନି ବଣିଆ ! ମୋର ଏ ପ୍ରାସାଦ, ଏ ସମ୍ପତ୍ତି, ଏ ସବୁର ଆଉ ମୂଲ୍ୟ କଣ ? କିଏ ଭୋଗ କରିବ ଏ ସବୁ ?

ବଣିଆ—ହେଲେ ବାବୁ—ମୋ ମନ କହୁଛି—ଅଳୁ ଦେଖିବ ଦିନେ ନା ଦିନେ ନିଶ୍ଚୟ ଫେରି ଆସିବେ—ସବୁଆଡ଼େ ତ ତାଙ୍କୁ ଖୋଜାହେଉଛି !

ଧନେଶ—ଖୋଜା ହେଉଛି—ଖବର କାଗଜରେ ଫଟୋ ଦିଆଯାଇଛି—ଯଦି ଅରୁଣାକୁ କେହି ଆଣି ଦିଅନ୍ତି, ତାଙ୍କୁ ଦଶହଜାର ଟଙ୍କା ପୁରସ୍କାର ଦିଆଯିବ ବୋଲି ବିଜ୍ଞାପନ ଦିଆଯାଇଛି—ଦେବ ଦେବତା, ଗ୍ରହଶାନ୍ତି—କୋଉଥିରେ ବାକି ନାହିଁ—ତଥାପି କାହିଁ ? କେହି ହେଲେ ତ ତାର ସନ୍ଧାନ ଦେଇ ପାରୁନାହାନ୍ତି ! ମୋ ଅଳୁ କଣ ସତେ ଏ ପୃଥିବୀରେ ବଞ୍ଚିକରି ଅଛି ବଣିଆ ? ଅଳୁ ପିଲାଟା—କିଏ ଏମିତି ତା ଉପରେ ଦାଉ ସାଧିଲା ? (ପ୍ରବେଶ କରିଚନ୍ତି ଧରଣୀ) କିଏ ? ଧରଣୀ—(ଲୁହ ପୋଛନ୍ତି)

ଧରଣୀ—(ଖାତା ହାତରେ) ସାର୍ ! ମୋର ଟିକେ ବ୍ୟବସାୟ କଥା···

ଧନେଶ—ନା—ନା—ଧରଣୀ, ମତେ ଆଉ ବ୍ୟବସାୟ ସମ୍ବନ୍ଧରେ କିଛି କୁହନା । ମୋର ମନର ଅବସ୍ଥା ତ ଦେଖୁଚ !

ଧରଣୀ—କିନ୍ତୁ ସାର୍ ! ଇନକମ୍ ଟ୍ୟାକ୍ସ ରିଟର୍ଣ୍ଣଟା ତ ଏଇମାସ ପନ୍ଦର ତାରିଖ ପୂର୍ବରୁ ଦିଆଯିବ । ସେଥିପାଇଁ ଆଉ ଜଣେ ଲୋକ ନହେଲେ ଖାତାପତ୍ର କଂପ୍ଲିଟ୍ ହୋଇପାରୁନି ।

ଧନେଶ—ସତ୍ୟାନାଶ ବାପ ତୁମେ ଧରଣୀ—ମୋ ଅବସ୍ଥା ଦେଖି ତୁମର ଟିକେ ଦୟା ହେଉନି ? ତୁମେ ଏ ସବୁ କଥା କହିପାରୁଚ ?

ଧରଣୀ—କିନ୍ତୁ ସାର୍, ଠିକ୍ ସମୟରେ ରିଟର୍ଣ୍ଣ ନ ଦେଲେ ଅବସ୍ଥା ଗୁରୁତର ହୋଇ ଉଠିବ ।

ଧନେଶ—ଷ୍ଟପ୍ ଆଇ ସେ (Stop I say)—ଧୂଳିସାତ୍ ହୋଇଯାଉ ମୋର ସମସ୍ତ ସମ୍ପତ୍ତି—ରସାତଳକୁ ଯାଉ ମୋର ତ୍ରିତଳ ପ୍ରାସାଦ—ଶ୍ମଶାନ ହୋଇଯାଉ ଏ ଘରର ମାର୍ବଲ ଚଟାଣ—ତା ପରେ ତୁମେ ଦେଖିବ ଧରଣୀ, ମୁଁ କେମିତି ମନଖୋଲି ହସିବି । ଲେଟ୍ ଦେମ୍ ବି ବର୍ଣ୍ଣ୍ଟ୍, ବଟ୍ ଆଇ ସାଲ ଡ୍ୟାମଡ୍ ଆଣ୍ଡ ଡ୍ୟାମସ୍ ଆଣ୍ଡ ଡ୍ୟାମ୍ଡ୍ !

(Let Rome be burnt, but I shall dance and dance and dance.)

(ପାଗଳ ଭଳି ହସି ହସି ଘର ଭିତରକୁ ଗଲେ । ବଂଶୀଆ ପଛେ ପଛେ ଗଲା—ଧରଣୀ ମୁହଁରେ ଫୁଟିଉଠିଲା କୁଟିଳତାର ହସ ।)

## ସପ୍ତମ ଦୃଶ୍ୟ

[ଯମସେର୍‌ଙ୍କ ବୁଢ଼ାଘର—ରାତ—ଭିତର ଆଲୁଅ ଜଳୁଛି । ଯମସେର୍ ବସି ଛୁରୀ ପକୋଉଛି—ଝରକା ପାଖରେ ଅରୁଣା ଠିଆହୋଇ 'ବାବା ବାବା' ଡାକ ଡାକୁଛି । ]

ଯମସେର୍—ଏ ଲଡ଼୍‌କା ! ଚୁପ୍‌କର—ଚୁପ୍‌କର । ତୋର ବାବାକୁ ଆଉ ପାଇବୁନି—ମୋର କଥା ମାନି ଖାଇଦେ କହୁଛି !

ଅରୁଣା—ମୋ ବାବା ନ ଆସିଲେ ମୁଁ କମା ଖାଇବିନି । ତୁମେ ସବୁଦିନ ମୋ ବାବାଙ୍କୁ ଆଣିବ ବୋଲି କହୁଛ—ମୋ ବାବା କାହାନ୍ତି ?

ଯମସେର୍—ତୋ ବାବାକୁ ମୁଁ କହିଆସିଛି—ଆସିବ—ତୁ ଜଲ୍‌ଦି ଖାଇଦେ ! ଖାଇସାରିଲେ ତୋ ବାବା ପାଖକୁ ଯିବା ।

ଅରୁଣା—କାହିଁକି ଆଣି ତୁମେ ମତେ ଏଠି ରଖିଛ ?

ଯମସେର୍—ତତେ ରଖିଛି କାହିଁକି ଜାଣୁ—ତୋର ବାବା ମୋ ଅମୀନାର ଜୀବନ ନେଇଛି—ମୁଁ ତୋର...

ଅରୁଣା—ଜୀବନ ନେବ ? ଜୀବନ କାହିଁକି ? ମୋର ଜୀବନ କୋଉଠି ଅଛି କହନ !

ଯମସେର୍—ଖାଲି ତୋର ଜୀବନ ନେବିନି—ତୋର—ତୋ ବାବାର—ସମସ୍ତଙ୍କର ଜୀବନ ନେବି—ଦେଖୁଚୁ—(ଛୁରୀ ଦେଖାଇକି) ଜଲ୍‌ଦି ଖାଇଦେ ।

ଅରୁଣା—ନା, ମୋର ଜୀବନ ନ ନେଲେ ମୁଁ ଖାଇବିନି ।

ସମଶେର୍—ଖାଇବୁନି ? ଜରୁର୍ ଖାଇବୁ ! (ଭାତ ଆଣିଲା)

ଅରୁଣା—ନା, ମୁଁ ଖାଇବିନି ! ନା—ନା—

ସମଶେର୍—ସର ଜିଦ୍ ତୋର ? ତୋ ବଦନରେ ତ ସେଇ ଖୁନ୍ ଅଛି ଆମୀନା— !

ଅରୁଣା—ମତେ ଫେର୍ ଆମୀନା ଡାକିଲ ? ମୁଁ ଅରୁଣା ।

ସମଶେର୍—ନାଁ—ରୁ ଆମୀନା ! ଆଉ କେବେ ଅରୁଣା ନାଁ ଧରିବୁନି । ତୋ ନାଁ ଆମୀନା, ମୁଁ ତୋତେ ଆମୀନା ବୋଲି ଡାକିବି । ନେ, ଖାଇଦେ ।

ଅରୁଣା—ନା, ମୁଁ ଖାଇବିନି—ମୋ ବାବା କିଛୁ ଖାଇନଥିବେ ।

ସମଶେର୍—କିଏ କହିଲା—ମୁଁ ତ ଅବକା ତୋର ବାବା ପାଖରୁ ଆସିଲି— ସେ ଖାଇପିଇ ଶୋଇଛି ।

ଅରୁଣା—ମୋ ବାବା ପାଖକୁ ଯାଇଥିଲ ? ବାବା କଣ କହିଲେ ?

ସମଶେର୍—କହିଲା—ସେ ଆଉ ତତେ ତା ପାଖକୁ ନବନି ।

ଅରୁଣା—ନା, ନା, ମୁଁ ବାବାଙ୍କ ପାଖକୁ ଯିବି ।

ସମଶେର୍—ସବୁବେଳେ ଖାଲି ବାବା ବାବା । ତୋର ଏକା ବାବା ଅଛି ନା ଦୁନିଆରେ ଆଉ କାହାର ଅଛି ? ତୋର ବାବା ମୋର ସର୍ବନାଶ କରିଛି —ସେଇଟା ଗୋଟେ ଜାନୁଆର୍ ।

ଅରୁଣା—ନାହିଁକି—ମୋ ବାବା ତ ଖୁବ୍ ଭଲ । ମତେ କେତେ ଗେଲ କରନ୍ତି—ନିଜ ହାତରେ ଖୁଆଇଦଅନ୍ତି ।

ସମଶେର୍—ଏଠି ନିଜ ହାତରେ ନ ଖାଇଲେ ବଞ୍ଚି ରହି ପାରିବୁନି ।

ଅରୁଣା—ନା, ମୁଁ ଖାଇବିନି । ମୁଁ ତ ବାଲିଯାତ୍ରା ଦେଖିବାକୁ ଆସିଥିଲି— ମତେ ଭୁଲେଇ ନେଇଆସିଲ ।

ସମଶେର୍—ହୁଁ, ତତେ ନେଇଆସିଛି—ତୋ ବାବାଠାରୁ ବଦ୍‌ଲା ନେବି ବୋଲି । ତୋ ବାବା ମୋଠୁ ବଳି ସଇତାନ୍ !

ଅରୁଣା—ତାହିଁକି ମୋ ବାବାଙ୍କୁ ଗାଳି ଦଉଚ ? ମୁଁ ତୁମ ପାଖରେ ରହିବିନି।
(ଦ୍ୱିଲଯାଉଥିଲା ସମସେର୍ ତୁରି ଦେଖାଇବାରୁ ଅଟକିଗଲା ।)

ସମସେର୍—ଦେଖୁଚ ତୁରି ? ମୋ କଥା ମାନି ନ ଖାଇଲେ ମୁଁ ତତେ ମାରିଦେବି ।

ଅରୁଣା—ତୁମ୍ଭ, ମୋ ବାବା ଅସନ୍ତୁ ।

ସମସେର୍—ପୁଣି ସେଇ ବାବା ? (ମାରିଲା)

ଅରୁଣା—(କାନ୍ଦକାନ୍ଦ) ଉ-ଉ-ଉ—ତୁମେ ମାରିଲାବାଲି—ମୁଁ ଜମାରୁ ଖାଇବିନି ।
(କାନ୍ଦୁଥାଏ)

ସମସେର୍—କଣ କହିଲୁ—ଖାଇବୁନି ? ଯା ନ ଖାଇ ମର ! (ଠେଲିଦେଲା—ଅରୁଣା ପଡ଼ିଗଲା—ବାବା ବାବା ଡାକି କାନ୍ଦୁଥାଏ—ସମସେର୍ ସହ୍ୟ କରି ନପାରି କୋଳେଇନେଲା) ବେଟୀ ଅମୀନା ! (ପ୍ରବେଶ କରନ୍ତି ଇସ୍ମାଇଲ)

ଇସ୍ମାଇଲ—ସମସେର୍ ! ଦେଖ୍ ଏ ବାକ୍ସଟା ଭିତରେ ଝିଅଟା ରହି ପାରିବ ତ ? ନେ ଏ ଔଷଧ ଶୁଙ୍ଘାଇ ଦେ—କାମ ଶେଷକର ।

ସମସେର୍—ଏ ଇସ୍ମାଇଲ ! ଦଦନ ହେଲା ଲଡ଼୍ କିଟା କିଛି ଖାଇନି ।

ଇସ୍ମାଇଲ—ଆରେ ନଖାଉ । ମୋଟା ସୋଟା ଅଛି—ମରିବନି । ଔଷଧ ଶୁଙ୍ଘାଇ ଟ୍ରଙ୍କ ଭିତରେ ପୁରାଇଦେଲେ ରହିଯିବ ।

ସମସେର୍—ରହ ଇସ୍ମାଇଲ, ମୁଁ ଆଗେ ତାକୁ ଖୁଆଇଦିଏ ।

ଅରୁଣା—ମୁଁ ତ ଖାଇବିନି ବୋଲି କହୁଚି !

ସମସେର୍—ତାହିଁକି ଖାଇବୁନି ?

ଅରୁଣା—ମୁଁ ମୋ ବାବାଙ୍କ ପାଖକୁ ଯିବି—ମୋ ବାବା ମତେ ଖୁଆଇ ଦେବେ ।

ଇସ୍ମାଇଲ—ଯିବୁ—ମୋ ସାଙ୍ଗରେ ଯିବୁ—ତୋ ବାବା ଖୁଆଇ ଦେବ ! (ତର୍କି ଧରିବାକୁ ଚାଲିବେଲେ ସମସେର୍ କୋଳେଇ ନେଇଛି ଅରୁଣାକୁ । )

ଅରୁଣା—ବାବା ! (ଜାନୁଦ୍ୱୟଧରନ୍ତି)

ଇସ୍ମାଇଲ—ରାମଦେବ୍ ! ତାକୁ ଛାଡ଼ିଦେ—

ରାମଦେବ୍—ରହ ଇସ୍ମାଇଲ୍ ! ପିଲାଟା ଭାରି ଡାକୁଛି । (ଅରୁଣାକୁ) ବୁଲି, ମୁଁ ତତେ ଛୁଆଁଇଦେବି ।

ଅରୁଣା—ତୁମେ ମୋ ବାବାଙ୍କୁ ଭଲ କରି ଛୁଆଁଇଦେବ ?

ରାମଦେବ୍—ହଁ ବେଟୀ—ତୁ ମୋର ଆଁଖି ! (ଛୁଆଁଇଲା)

ଇସ୍ମାଇଲ—ବାହ୍ରେ ଡାକ୍ତର ହେଲେ ପାରିବ ରାମଦେବ୍, ଜଲ୍‌ଦି କର ! ଏ ଲଡ଼୍‌କି, ଏଠିକି ଆ ।

ଅରୁଣା—ନା, ମୁଁ ଯିବିନି ।

ରାମଦେବ୍—ଥାଉ ଥାଉ ଇସ୍ମାଇଲ ! ଆଜି ରାତିଟା ଥାଉ—କାଲି ନେଇଯିବୁ ।

ଇସ୍ମାଇଲ—ରାମଦେବ୍ ! ତୁ ପାଗଳ ହେଲୁ ? ଦଶ ଟଙ୍କା ନେଇଛୁ—କେତେଟା ଦୋସ୍ତଙ୍କୁ ଡାକି ନେଇ ଛିଅଟା ଦେଖା ଭଅ ।

ରାମଦେବ୍—ଇସ୍ମାଇଲ୍ ! ମେହେରବାନି କର—ପିଲାଟା ଆଜିକି ରହିଯାଉ ।

ଇସ୍ମାଇଲ୍—ରହିଯିବ ? ରାମଦେବ୍, ପିଲାଟାକୁ ନ ନେଲେ ମୋର ଭଲ [illegible] ନାହିଁ ! କଲକତା ସର୍ଦ୍ଦାର ମୋର ଜାନ୍ ନେଇଯିବ ।

ରାମଦେବ୍—ହଁ, ମୋର ଜାନ୍ ଦେଇଦେବି—ଦେଇକି ବେଟୀକୁ ଦେଇ ପାରିବନି ।

ଇସ୍ମାଇଲ—ରାମଦେବ୍ ! ଏଏ ତୋର ବେଟୀ ? ତୁ ଭୁଲିଯାଉଛୁ, ସେ ହିନ୍ଦୁ, ତୁ ମୁସଲମାନ ।

ରାମଦେବ୍—ଇସ୍ମାଇଲ୍ ! ସେ ହିନ୍ଦୁ ବୋଲି ତାର ଖୁନ୍ କଣ ଆମଠାରୁ ଅଲଗା ? ଆମ ଏ ଦେଶରେ ସବୁ ଧର୍ମ ସମାନ—ସବୁ ମଣିଷ ସମାନ । ହିନ୍ଦୁ, ମୁସଲମାନ, ଖ୍ରୀଷ୍ଟାନ୍ ସମସ୍ତେ ଭାଇ ଭାଇ ଭଳି ଏ ଦେଶରେ ରହୁଛନ୍ତି ।

ଇସ୍ମାଇଲ—ବହୁତ୍ ଭଲ ! ମୁଁ ଏ ସବୁ ଜାଣେନା । ସର୍ଦ୍ଦାରର ହୁକୁମ୍—ଆଜି ତାକୁ ମୁଁ ନେଇଯିବି ।

# ଦ୍ୱିତୀୟ ଅଙ୍କ

## ପ୍ରଥମ ଦୃଶ୍ୟ—

[ଗଣେଶ ବାବୁଙ୍କ ବୈଠକଖାନା । ପଛପଟ ଝରକା ଦେଇ ପୂର୍ଣ୍ଣିମାର ଚନ୍ଦ୍ର ଦୃଶ୍ୟମାନ । ଗଣେଶ-ବାବୁ ପଢ଼ୁଥିଲେ । ହଠାତ୍ ଗୋଟାଏ ଜାଗାରେ ଅଟକି ଯାଇ—]

ଗଣେଶ—ଏ ଉଣ୍ଡେଡ୍ ହାର୍ଟ ଇଜ୍ ହାର୍ଡ଼ ଟୁ କିଓର (A wounded heart is hard to cure)—ଭଙ୍ଗା ଛାତି ଭଲ ହୋଇ ପାରେନା । (ଅମର ପ୍ରବେଶ କରି ନମସ୍କାର କରିଛି)

ଗଣେଶ—Do you know young man—A wounded heart is hard to cure ? ( ଏ ଉଣ୍ଡେଡ୍ ହାର୍ଟ ଇଜ୍ ହାର୍ଡ଼ ଟୁ କିଓର ? )

ଅମର—ସାର୍ !

ଗଣେଶ—ଅରେ ଅମର ! ଅରେ କିଏ ଅଛ ? ଅମର ଆସିଛି ! ଲଳିଆ, ଧରଣୀ, ଆନନ୍ଦ, ଅରୁଣା ! ଅରେ ଚା ନେଇ ଆସ, ମୋ ଜୋଇଁ ଆସିଛି ! (ଗଣେଶ ଭିତରକୁ ବୁଲିଯାଇ ଦୁଇ କପ୍ ଚା ଧରି ପୁନଃ ପ୍ରବେଶ କଲେ ) ଅମର, ଅମର !

ଅମର—ସାର୍ ! ଆପଣ ନିଜେ—( ଗଣେଶ ବାବୁଙ୍କ ହାତରୁ ଟ୍ରେ ନେଇ ଟେବୁଲରେ ରଖିଲା । )

ଗଣେଶ—ଅରେ ମୋ ଜୋଇଁ ପାଇଁ ମୁଁ ନିଜେ ଚା ଆଣିବିନି ତ ଆଉ କିଏ ଆଣିବ ?

ବଶିଆ—(ଆସି) ବାବୁ ! ମୁଁ ବ୍ଲ'ଟା ଆଣୁ ଆଣୁ ମୋ ହାତରୁ ଛଡ଼େଇ ନେଇ ଆସିଲ ! ତମକୁ ଆଉ ପାରନ୍ତନନ ବାବୁ !

ଦୀନେଶ—ବଶିଆ, ତୁ ବି ମୋତେ ଶୋଷନ କରିବୁ ? ଅରେ ସ୍ଲ ମୁଁ ଖାଇବ, ଅଉ ମୋ ଜୋଇଁ ଖାଇବ—ମୁଁ ନିଜେ ସ୍ଲ ନେଇ ଆସିବନ ତ ଆଉ କିଏ ଆଣିବ ? ତୁ ଆଣିବୁ ? ନା ନା, ମୋ ଝିଅ ପର୍ ସ୍ତର କରିବ—ଜୋଇଁର ଅପମାନ ହେବ ! ଅମର, ସ୍ଲ କପ୍‌ଗୁଡ଼ାକ ନେଇ ଟେବୁଲ୍ ଉପରେ ରଖିଦେଲ୍ କାହିଁକି ? ଖାଅନା !

ଅମର—ଆପଣ ଖାଆନ୍ତୁ ସାର୍ !

ଦୀନେଶ—ସାର୍ ! କଣ କହିଲ—'ସାର୍' ! ମୁଁ ତୁମର ସାର୍ ! ଅରେ ତୁମେ M. A. ପର୍ଯ୍ୟନ୍ତ ପାଠ ପଢ଼ିଲ—ବି. ଡ଼ି. ଓ. ହେଲ—ତାହାକୁ କଣ ଜବାପାଏ ଜାଣିଲ୍ ନାହିଁ ? ଶଶୁରକୁ ସାର୍ ଡାକନ୍ତି ? ହିଁ-ହିଁ—ଡାକନ୍ତି, ହେଲେ ସେ ତ ବଳକ ଅମେରିକାରେ—ଆମ ଏ ଓଡ଼ିଶା ଦେଶରେ ଶଶୁରକୁ ସାର୍ ଡାକିବା ଚଳେନା । ଅଚ୍ଛା ଅଚ୍ଛା, ସ୍ଲ ଟା ଖାଇନଅ ! (ଅମରକୁ ସ୍ଲ ବଢ଼େଇଦେଲେ) ବୁଝିଲ୍ ଅମର, ମୁଁ ତୁମ ଶଶୁର, ତୁମେ ମୋର ଜୋଇଁ ! ମୋତେ ବାବା ବୋଲି ଡାକ ! Call me 'ବାବା' ! Call me ..

ଅମର—ବାବା !!

ଦୀନେଶ—(ଘଣ୍ଟେ ଅନେଇ ରହିଲେ—ଆଖିରେ ଲୁହ ଜକେଇ ଆସିଲ । ) ବାବା ! ଆଃ, କେତେ ଭଲ ଲ ଏ ଡାକ ! କେତେ ମିଠା ! ଦେୟାର୍ ଇଜ୍ ନୋ ଫ୍ରେଣ୍ଡସିପ୍, ନୋ ଲଭ୍, ଲାଇକ୍ ଦାଟ୍ ଅଫ୍ ଦ ପ୍ୟାରେଣ୍ଟ୍ ଫର୍ ଦ ଚାଇଲ୍ଡ୍ । ( There is no friendship, no love like that of the parent for the child.) ବାବା...ଠିକ୍ ଏମିତ ଡାକ ମୁଁ ଶୁଣିଥିଲ ଦଶବର୍ଷ ତଳେ । 'ବାବା' 'ବାବା' ଡାକ ମୋର ଅରୁ ସାର ଘରଟାକୁ ମୁଖରିତ କରୁଥିଲ ।

ବଶିଆ—ଆଉ ବାବୁ ଆଜ, ପୁଣି ସେ କଥାଗୁଡ଼ା ମନେପଡ଼େଇ ବାବୁଙ୍କ ପାଇ ହେଲ ? ଦନ ସରା ତ ଏଇ ଚର୍ଚ୍ଚା କରିବ, ଏ ଘରଟା ପୁଣି ଛାଡ଼ିବ କେମିତ ?

ଗଣେଶ—ତୁମେ ତ ଜାଣ ଅମର, ବର୍ଷିଆ ଏ ଘରର ଅତି ପୁରୁଣା ସ୍ତମ୍ଭର । ସ୍ତମ୍ଭର କାହିଁକି, ସେ ମୋର ଅତି ପୁରୁଣା ବନ୍ଧୁ । ଓ୍ୱି ଆର୍ ଟୁ ଓଲ୍ଡ ଫ୍ରେଣ୍ଡ୍ସ୍ (We are two old friends) । ସେ କହୁଚ ଘରଟା ଚଳିବ କେମିତି ? ଠିକ କଥା ତ···ଘରଟା ଚଳିବ କେମିତି ? ହୋମ୍ ଇଜ୍ ପାରାଡାଇଜ୍ (Home is paradise) । ହେଲେ ସେ ଘର କଣ ମୋର ଅଛି ? ଅରତ ଗଲା । ତାର ଅଭାବ ମୁଁ ଭୁଲିଯାଉଥିଲି ଅରୁଣାକୁ ପାଇ । ବନର ହରିଣୀଟି ଭଳି ନାଚି ନାଚି ସେ ମୋର ଛାତି ଉପରେ ଲେଉଟି ଯାଉଥିଲା । ତାକୁଇ ନେଇ ମୁଁ କରିଥିଲି କେତେ ଭବିଷ୍ୟତ କଳ୍ପନା—ହେଲେ ସେ ବି ଭୁଲିଗଲା !

ଅମର—ଯାହା ଗଲଣି ତା ମନେପକେଇ ଲାଭ କଣ ? ତାପରେ ଆପଣଙ୍କର ସ୍ୱାସ୍ଥ୍ୟ ଯାହା···

ଗଣେଶ—ମୁଁ ଯେ ନିଃସ୍ୱ ହୋଇ ପଡ଼ିଚି ଅମର ! ଯାହା ଭରସା ସମ୍ବଳ ସବୁ ମୁଁ ହରେଇଛି । ମୋର ଅସରନ୍ତି ଆଶା··· ··

ଅମର—ଏ ପୃଥିବୀ ବଡ଼ ବିଚିତ୍ର । ସୃଷ୍ଟିର ନିୟମ ଅଦ୍ଭୁତ । କେତେବେଳେ ଯେ କଣ ହୁଏ କହି ହୁଏନା । ବହୁତ ଚିନ୍ତା କରି ମଣିଷ ଯେଉଁ ସିଦ୍ଧାନ୍ତରେ ପହଞ୍ଚେ, ହୁଏତ ତା କାର୍ଯ୍ୟକାରୀ ହୋଇ ପାରେନା । ମଣିଷ ଯାହା କେବେ ସ୍ୱପ୍ନରେ ଭାବି ନ ଥାଏ, ସେଇ ସବୁ ଘଟିଯାଏ ।

ଗଣେଶ—ନିଶ୍ଚୟ ! ତୁମେ ଠିକ୍ କହୁଚ ଅମର । ମ୍ୟାନ୍ ପ୍ରୋପୋଜେସ୍ ଗଡ୍ ଡିସ୍ପୋଜେସ୍ (Man proposes, God disposes) । ଏଇ ଦେଖୁନ, ତୁମ ବାପା ଆଉ ମୁଁ ଥିଲୁ ବାଲ୍ୟବନ୍ଧୁ । ଖୁବ୍ ଇଣ୍ଟିମେଟ୍ । ତୁମେ ଥିଲ ତୁମ ବାପାଙ୍କର ଗୋଟିଏ ସନ୍ତାନ, ଆଉ ଅରୁ ଥିଲା ମୋର ଏକମାତ୍ର କନ୍ୟା । ତୁମ ଦୁହିଁଙ୍କୁ ନେଇ ଆମେ ଦୁଇ ବନ୍ଧୁ ଏକ ଭବିଷ୍ୟତ କଳ୍ପନାରେ ବିଭୋର ହୋଇଯାଉଥିଲୁ ।

ଅମର—ଆପଣ କଣ ମୋପାଇଁ କମ୍ କରିଛନ୍ତି ! ବାପାଙ୍କୁ ହରେଇ ଆପଣଙ୍କ ସାହାଯ୍ୟ ନ ପାଇଥିଲେ, ମୋର ଯେ କଣ ହୋଇଥାଆନ୍ତା !

ହୁଏତ ମୁଁ ଆଜ ରାସ୍ତା ଧାରର କୋଉ ଦୋକାନରେ…………
(ଲୁହ ପୋଛିଲେ)

ବଣିଆ—ତୁମେ ତ ଜାଣିଚ ଅମର ବାବୁ ? ଏଠିକି ଏ ଦଶବର୍ଷ ଭିତରେ ଯେତେ ଲୋକ ଆସିଛନ୍ତି, ସଭିଏଁ କାନ୍ଦକାନ୍ଦ ଫେରିଚନ୍ତି । ଘରର ମୁରବି ଯେତେବେଳେ ବନବାସ କାଟୁଚି, ତୁମେ ବା ନ କାନ୍ଦିବ କାହିଁକି ? ଅଳ୍ପ ଦେଇ ଥିଲେ ସେ ତ ତୁମର ଘରକୁ ଯାଇଥାନ୍ତେ ।
( ବଣିଆ ଲୁହ ପୋଛିଲା )

ଦିନେଶ—ବଣିଆ, ତୁ ଗୋଟାଏ ଅବୋଧ ! (ହସି) ତୁ କୋଉଠୁ ବୁଝିବୁ ଏ ଦୁଃଖ ! ଯୁଗେ ଯୁଗେ ସନ୍ତାନ ଅସ୍ଥିର ଦୁଃଖ ସୃଷ୍ଟି କରିଚି ସଂସାର ସମୁଦ୍ର । ସେ ଦୁଃଖ-ସମୁଦ୍ରର ଅନ୍ତ ନାହିଁ ।

ଅମର—ଆପଣ ଉତ୍ତେଜିତ ହୋଇପଡ଼ିଚନ୍ତି !

ଦିନେଶ—ହଁ ଅମର…ତୁମେ ଜାଣିପାରିବ ଏ ଉତ୍ତେଜନାର ଶେଷ କେଉଁଠି ? ତୁମେ କଣ ପଢ଼ିନାହଁ, ଶକୁନ୍ତଳାର ବିରହରେ ଋଷିପିତା କଣ୍ୱ କିପରି ବ୍ୟାକୁଳ ହୋଇ ଆଖିରୁ ଝରାଇଥିଲେ ଲୁହର ବନ୍ୟା ! ଆହୁରି ଶୁଣ, ଏଇ ଓଡ଼ିଶା ଦେଶରେ ବାରବର୍ଷର ଧର୍ମପଦ, ବାରବର୍ଷର ବାଳକବ୍ରତ ମୃତ୍ୟୁକୁ ବରଣ କରି, ସମଗ୍ର ଶିଳ୍ପୀବୃନ୍ଦଙ୍କୁ କଣ ବଞ୍ଚାଇ କରି ନ ଥିଲେ ! ରକ୍ତ-ମାଂସ ଦେଇ ଯେଉଁମାନଙ୍କୁ ତୁମେ ଗଢ଼ିଲ, ସେଇମାନେ ଯଦି ତୁମକୁ ଠକିଦେଇ ଚାଲିଯାଆନ୍ତି—ସେ ଦୁଃଖ ତୁମେ ଭୁଲିବ କେମିତି ? ଦି ପେନ ଅଫ୍ ମାଇଣ୍ଡ୍ ଇଜ୍ ଓ୍ୱର୍ସ୍ ଦ୍ୟାନ ଦି ପେନ ଅଫ୍ ଦି ବଡ଼ି । (The pain of the mind is worse than the pain of the body.) ।

ବଣିଆ—ଏଇ ମୋର ଆଖି ଆଗରେ କେତେ ଘଟଣା ଘଟିଗଲା । ଆରତି ମା ମୋର ବୋହୂ ହୋଇ ଏ ଘରକୁ ଆସିଲେ । ସଂସାର ହସି ଉଠିଲା । ତାପରେ ଜନ୍ମ ହେଲେ ଅଚ୍ୟୁତାନନ୍ଦ । ହେଲେ ବାବୁ ! ସେ ସବୁ କଥା ଆଜି କାହିଁକି ?

## ଦ୍ୱିତୀୟ ଦୃଶ୍ୟ—

[ ନଦୀକୂଳ—ଗଛମୂଳରେ ବସିଛି ସୋଡ଼ଶୀ ଅମୀନା—ଗୀତ ଗାଉଛି 'କେଉଁ ଦୋହ୍ କା'— ପାଖରେ ଜମସେର୍‌ର କୁଡ଼ିଆ। ଗୀତ ଶେଷରେ ପଶିଲା ଜମସେର୍।]

ଜମସେର୍—ବେଟୀ ଅମୀନା!

ଅମୀନା—ବାପୁ!

ଜମସେର୍—ବେଟୀ, ତୁ ମୁହଁ ଶୁଖେଇକି ବସିଛୁ? କଣ ହେଲାଣି?

ଅମୀନା—ନାହିଁ ବାପୁ—ମୋର କଷ୍ଟ ହେଉନି। ମୁଁ ତୁମକୁ କହୁଛି ନା— ମୋ କଥା ତୁମେ କେବେ ବୁଝିବ ନାହିଁ!

ଜମସେର୍—ବେଟୀ, କେଉଁ ଚିନ୍ତା ମୋର ଅଛି କଣ ଅଛି କହ? ଅଉ କାହା କଥା ବୁଝିବି? ତୁ ମୋର ଜାନ୍—ମାନ୍—ସବୁ। ବେଟୀ ଖାନା ଖାଇଲୁଣି?

ଅମୀନା—ନାହିଁ ବାପୁ! ଖାଦ୍ୟ ବୁଝିଲ ଆଣିଥିଲ ସରିଯାଇଛି।

ଜମସେର୍—ଅଚ୍ଛା ଅଚ୍ଛା, ମୁଁ ଖାଲିଟା ଦୋକାନରୁ କିଛି ନେଇ ଆସିବି। (ଚାଲିଯାଉଥିଲା)

ଅମୀନା—ବାପୁ! ଜଲଦୀ ଫେରିଯାଅ।

ଜମସେର୍—ହଁ...ହଁ...ଏଇ ଆସେ। (ଅମୀନା ଘରେ ପଶିବାକୁ ଗଲା। ଏଇ ସମୟରେ ପଶିଲେ ଦୁଇଜଣ ବନ୍ଧୁ ଆସି—ଉଦ୍‌ବସ୍ ଓ ମନ୍ଦୁ।)

ମନ୍ଦୁ—ଜମସେର୍! ଆଜ କଥା କଣ ହେଲା?

ଜମସେର୍—କେଉଁ କଥା? କେଉଁ ଚୁକ୍ତି ଜୋର କଥା?

ଉଦ୍‌ବସ୍—ହାଃ, ଦେଖ୍‌ବେ ମନ୍ଦୁ—ଅଜାଣରୁ ଯେସି ପଚାରି ଜାଣି କଥା କହୁଛି।

ଜମସେର୍—କଣ ତୁମର କଥା—ଖୋଲ୍ ଖୋଲ୍ କହ।

ମନ୍ଦୁ—ଆମକୁ ଆଉ କଣ—ତମେ ଏଠୁ ଉଠିଯିବାକୁ ପଡ଼ିବ।

ଜମସେର୍—ଓ...ଏହ ବୁଝିଲି ବାବୁ!

ମଲୁ—ସୁନ୍ଦନା ବାନ୍ତୁ ! ତୋର ଯୋଗୁ ବସ୍ତିର ଝିଅବୋହୁ ବଦ୍‌ନାମ୍ ହେବେ—କହୁଚ କେନା ସୁନ୍ଦନା ବାନ୍ତୁ !

ସମସେର୍—ମୋଣ୍ଟ ଯୋଗୁ ବସ୍ତିର ଝିଅବୋହୁ ବଦ୍‌ନାମ୍ ହେବେ ? ସମସେର୍ ଅଛି ବସ୍ତି ଭିତରେ କେଉଁ ଯାଏ ? ବସ୍ତିର ଝିଅ ବୋହୁଙ୍କ ମୁହଁକୁ କଉ ଚାଏ ?

ଇଦ୍‌ରିସ୍—ଝର ହାଥୁ ସୁବୁଡ—ସବୁ ଗଣ୍ଡଗୋଳର ମୂଳରେ ତୁ !

ସମସେର୍—ଇଦ୍‌ରିସ୍, ତୁ ପୁଣି କଡ଼ା କଡ଼ା ବାତ୍ କହୁଚୁ ? ତୋ ଗୁଣ କଣ ମୁଁ ଜାଣିନି ?

ମଲୁ—ସେ ସବୁ ଛାଡ଼—ଆମେ ଯାହା ବୁଝିଚୁ ଠିକ୍ ବୁଝିଚୁ । ତୋର ଯୋଗୁ ଏ ବସ୍ତି ବଦ୍‌ନାମ୍ ହଉଚି । ଆଜି ପଞ୍ଚାୟତ ବସିଥିଲା ପୀରଙ୍କ ଅସ୍ଥାନ ପାଖରେ ।

ସମସେର୍—ହୁଁ—ପଞ୍ଚାୟତରେ କଣ ହେଲା ?

ଇଦ୍‌ରିସ୍—ହବ ଆଉ କଣ ? ତୋର କଥା । ସବାନ୍ ଜଡ଼ିଙ୍କୁ ଘରେ ରଖି ଗ୍ରାମମନ୍ତ ଗୋଟାଏ ଅଡ୍ଡା ଚଳେଇଚୁ ।

ସମସେର୍—ଖାମୋସ୍ ! ଘର ଭିତରେ ମୁଁ କଣ କଲି, ସେଥିରେ ତୁମମାନଙ୍କର କଣ ଯାଏ ଆସେ ? ବସ୍ତିବାଲା ପଞ୍ଚାୟତ ନା ଫାର୍ଶ କରୁଚନ୍ତି ?

ମଲୁ—କଣ କହିଲୁ—ବସ୍ତିର ପଞ୍ଚାୟତ ଫାର୍ଶ ? ବସ୍ତିବାଲା ବୁଝିଲେ ତୋର ଦଫାରଫା ଶେଷ କରିଦେବେ ।

ସମସେର୍—ବସ୍ତିବାଲାଙ୍କର ମୁଁ ଖାଏ ନା ଧାରେ ? ଏଇଟା ବସ୍ତି ନୁହେଁ—ଗୁଣ୍ଡା ବଦ୍‌ମାସଙ୍କ ଅଡ୍ଡା ।

ମଲୁ—ଏ, ମୁହଁ ସମ୍ଭାଳି କଥା କହ ସମସେର୍ ! ସବାନ୍ ଲଡ଼ିଙ୍କୁ ଘରେ କାହିଁକି ରଖିଚୁ ? ସାଦି କରେଇଦେଇନୁ ?

ସମସେର୍—ସାଦି ?

ମଲୁ—ହଁ ସାଦି—ଇଦ୍‌ରିସ୍‌ତ ରାଜି ଅଛୁ !

ଇଦ୍‌ରିସ୍—ହଁ, ମୁଁ ରାଜି ଅଛି ।

ସମସେର୍—କ୍ୟା ବୋଲା ? ଇଦ୍ରିସ୍ ସହିତ ଅମୀନାର ସାଦି ? ଜାନୁଅର୍ କା ସାଥ୍ ଆଦ୍‌ମୀ କା ସାଦି ?

ଇଦ୍ରିସ୍—କ୍ୟା ବୋଲା, ମୈଁ ଜାନୁଅର ?

ସମସେର୍—ବେଇମାନ୍...ବେସରମ୍ ! (ମାରିଲା) ନିକାଲ୍ ଯାଓ ୟହାଁସେ ! ଖବରଦାର୍—ଅଉର୍ କଭି ୟହାଁ । ମତ୍ ଆନା । ଆଓଗେ ତୋ ଜାନ୍ ଲେଲୁଙ୍ଗା ।

ମକ୍ସୁ—ସୁନ୍‌ଲେ ଇଦ୍ରିସ୍ ଭାଇ—ବସ୍ତିରେ ଏ କଥା ପଡ଼ିଗଲା—ଦେଖିବା କୋଉ ବାପ ପୁଅ ପିଠିରେ ପଡ଼ିବ ।

ସମସେର୍—ଯାଓ—ନିକାଲ୍ ଯାଓ !

(ମକ୍ସୁ ଓ ଇଦ୍ରିସ୍ ପ୍ରସ୍ଥାନ କଲେ । ସମସେର କଣ ଭାବୁଥିଲା—ଅମୀନା ପ୍ରବେଶ କରିଛି ।)

ଅମୀନା—ବାପୁ !

ସମସେର୍—ହାଁ । ବେଟୀ !

ଅମୀନା—ଦିନ୍ ଦିନ୍ ବସ୍ତି ଭିତରୁ ଲୋକଜୁଡ଼ା ଆସି ତୁମକୁ ଏମିତି ଅପମାନ କରୁଥିବେ—ମୁଁ ଆଉ ସହିପାରିବିନି ବାପୁ !

ସମସେର୍—ଆରେ ପଗ୍‌ଲୀ, ସେଥିରେ ତୋର କଣ ଯାଏ ଆସେ ? ସେ କଥା ମୁଁ ବୁଝିବି ।

ଅମୀନା—ମୋ ପାଇଁ ବସ୍ତିରେ ଏତେ କଥା । ତୁମପ୍ରତି ସେମାନଙ୍କର କେତେ ଆକ୍ରୋଶ । ମୋ ପାଇଁ କାହିଁକି ଯେ ତୁମେ ଏତେ କଷ୍ଟ ପାଇବ...?

ସମସେର୍—ସେ ସବୁ କିଛି ନୁହେଁ ବେଟୀ—ମୁଁ ସେ ସବୁକୁ ଆଖି ବୁଜି ଦେଇଛି । ମୋ ଦେହର ରକ୍ତ ତ ଥଣ୍ଡା ହୋଇଯାଇନି—ବୁଢ଼ା ହେଲେ ବି ମୋ ହାତ ଦ'ଟାରେ ଏବେ ବି ଅଛି ଜବାନ୍‌ର ବଳ । ମୁଁ ଚାହିଁଲେ ଏ ବସ୍ତି ଟାକୁ ଥଣ୍ଡା କରିଦେବି ।

ଅମୀନା—ଆମକୁ ତ ବସ୍ତିରୁ ବାହାର କରଚନ୍ତି। ନିଆଁ ପାଣି ସବୁ ବନ୍ଦ। କାହିଁକି ବାପୁ—ତୁମେ ତାଙ୍କର କି ଦୋଷ କରିଥିଲ ? ମୁଁ କଣ କହୁ ବୁଝି ପାରୁନ—ମୋତେ କେଉଁ ସବୁ କହୁ ଗୋଳମାଳ। ତାଠୁଁ ବରଂ ·

ସମସେର୍—ବସ୍ତି ବାଲା ବେକୁବ। ମୁଁ ସେମାନଙ୍କୁ ଖାତର କରେନା।

ଅମୀନା—ସେମାନେ ଏକଜୁଟ ହୋଇ କେତେବେଳେ କଣ କରିବେ— ତୁମ ଉପରେ ହାତ ପାଇବେ। ତା'ଠୁଁ ବରଂ ଭଲ ମୁଁ ଚାଲିଯାଉଚି ବାପୁ··

ସମସେର୍—କଣ କହୁଲୁ ? ତୁ ଚାଲିଯିବୁ ? କୋଉଠିକି ଚାଲିଯିବୁ ?

ଅମୀନା—ଯୋଉଆଡ଼େ ଦୁଇ ଆଖି ନେଇଯିବ !

ସମସେର୍—ଚାଲିଯିବୁ—ଯା ଚାଲିଯା ! ବାରବର୍ଷକାଳ ପୋଲିସ୍ ଆଖିରେ ଧୂଳି ଦେଇ, କଲିକତାର ଅନ୍ଧକାରଭରା ଗଳି ଭିତରେ ତୋତେ ବଢ଼େଇ ଆଣିଥିଲି···(କାନ୍ଦନ୍ତି)

ଅମୀନା—ବାପୁ !

ସମସେର୍—ବସ୍ତି ବାଲା କହୁଚନ୍ତି, ଇଦ୍ରିସ୍ ସହିତ ତୋର ସାଦି ହେବ। (ହସିଲା) ଇଦ୍ରିସ୍‌କା ସାଥ୍ ଅମୀନାକୀ ସାଦି ? (ହସିଲା—ଅମୀନା ଡରିଗଲା)

ଅମୀନା—ବାପୁ !

ସମସେର୍—ସେମାନଙ୍କୁ ମୁଁ ଖୁନ୍ କରିବ ! ବସ୍ତିଟାକୁ ସାଫ କରିଦେବି— ଏଇ ମୋର ଶେଷ କଥା। ବସ୍ତି ସାଫ୍ ହୋଇଯାଉ, ନୋହିଲେ ମୁଁ ସାଫ୍ ହୋଇଯାଏ।

ଅମୀନା—ବାପୁ—ବସ୍ତି ବାଲା ଯାହା କହୁଚନ୍ତି ତୁମେ ମାନିନିଅ।

ସମସେର୍—ଅମୀନା ?

ଅମୀନା—ହଁ ବାପୁ—ତୁମେ ମାନିନିଅ। ସେଥିରେ ଯଦି ବସ୍ତି ଥଣ୍ଡା ହୋଇଯାଏ, ତୁମେ ସେ କଥାକୁ ମାନିନିଅ।

ସମଶେର୍—ମାନନେବ ? କଦ୍‌ଋସ୍ ସହିତ ତୋ ସାଦିକୁ ମୁଁ ମାନନେବ ? ଅମୀନା ! ମୋର ଏତେ ବଡ଼ର ମେହେନତ୍ କଣ ମାଟିରେ ମିଶିଯିବ ? ତୋର ବଂଶର ଜାତ ଛାଡ଼ି ତୁ ମୁସଲମାନ ଘରେ ବାହାହବୁ ? ନା-ନା ! ମୁଁ ଜନ୍ମ ଥିବା ଯାଏ ତା' କରେଇ ଦେବନି । ତବେ ମୁସଲମାନ ଘରେ ସାଦି କରେଇବା ପାଇଁ ସେମାନଙ୍କର ଏତେ ଜିଦ୍ କାହିଁକି ? ମୋ ଘରେ ତୋର ରହିବାଟାକୁ ସେମାନେ ଏତେ ନାପସନ୍ଦ କରୁଛନ୍ତି କାହିଁକି ? ଅରେ ବେଟୀ, ଏ ଦେଶ ସବୁ ଜଗନ୍ନାଥର ଦେଶ—ତୁ ସବୁ ଶେଖ ଜଗନ୍ନାଥଙ୍କୁ ପୂଜା କରୁଛୁ—ଏ ଜଗନ୍ନାଥ କାହାର ଦେବତା ! ସେ କଣି ଖାଲି ହିନ୍ଦୁର ? ନା-ନା ? ଜଗନ୍ନାଥ ସବୁ ମଣିଷର । ଅରେ ବେଟୀ, ଅମର ଜାତର ସାଲବେଗ ସବୁ ଜଗନ୍ନାଥଙ୍କର ଭକ୍ତ ହେଇପାରିଥିଲା—ବଡ଼ଦାଣ୍ଡରେ ପୂଜା ପାଇଲା ?

ଅମୀନା—ବାପୁ ! ନା ନା ବାପୁ—ମତେ ତୁମେ ଛାଡ଼ିଦିଅ—ମୋ ବାଟରେ ମୁଁ ଚାଲିଯାଏ ।

ସମଶେର୍—ଯିବୁ—ଯା ଚାଲିଯା !

ଅମୀନା—ବାପୁ...

ସମଶେର୍—ଝୁଟା—ସବ୍ ଝୁଟା—ବାପ୍ ବେଟୀ ସବ୍ ଝୁଟା ! ତୁ ମୋର କେହି ନୋହୁ—ନା-ନା—ତୁ ମୋର କେହି ନୋହୁ—ଚାଲିଯା—ଚାଲିଯା ! (କାନ୍ଦିଲା)

ଅମୀନା—ମୋର ଭୁଲ ହେଇଚି ବାପୁ ! ମତେ ମାଫ୍ କରି ! ମୋର ଭୁଲ ହେଇଚି ବାପୁ ! (କାନ୍ଦିଲା)

ସମଶେର୍—ଅମୀନା...(କୋଳେଇନେଇଚି)

## ତୃତୀୟ ଦୃଶ୍ୟ—

[ କଟକ ସହରର ଏକ ରାସ୍ତା । ଅଠର ବର୍ଷର ଝିଅଟିଏ ନାଚୁଛି—ଜଣେ ହାରମୋନିୟମ ବଜାଉଛି । ଦାଣ୍ଡରେ ଯିବା ଲୋକେ ଦଣ୍ଡେ ଠିଆହୋଇ କିଛି କିଛି ପଇସା ଦେଇ ଯାଉଥାଆନ୍ତି । ଧରଣୀ ଗୋଟେ କୋଣରେ ନାଚ ଦେଖୁଥିଲା । ସମସ୍ତେ ଚାଲିଗଲେ ପରେ ରହିଗଲେ ଏକା । ନାଚବାଲୀ ପଇସା ମାଗିବାରୁ ଧରଣୀ ତାକୁ ପୂଲାଏ ନୋଟ ଦେଖେଇଲା । ]

—ଗୀତ—

ଓ…ଲଟକ ଜମର ବଲଖାସ୍ତରେ—ହାସ୍ତରେ ବଲଖାସ୍ତରେ
ଚୁନରି ଉଡ଼୍ ଯାଏ ରେ—ଯାଏରେ ମେରି ହାସ୍ତ—
ସେ…ତୁନଅଁ ଓ୍ୱାଲେ—ଦେଖ୍ କେ ନଜଲେ—
ସମ୍ହାଲକେ ନଜର ବଞ୍ଚନା ବଞ୍ଚନା ଲେଖଣି ॥
ଓ…ତେଖି ପତଲି ଜମର ସେ ଧରଛି ନଜର
ଓଁର ଶୋଲି ଜମର ସେ ତୋବ୍ ବା
ଠୁମକ୍ ଠୁମକ୍ ଚାଲ ଘୁଂଘର ଘୁଂଘର ତାଲ
ଲାଗିଁ ଲୁପାଇ ମୋରେ ବାବ୍ ବା —
ସେ…ମସ୍ତ ହଓ୍ୱାସେ—ମେସ୍ତ ହୁସ୍‌ନ୍ ବେସାଏ
ଲାଣ୍ଡ ଜଜର ନସ୍ତନ ଶରମାସ୍ତରେ ହାସ୍ତ ॥
ଓ…ଛୁରେ ତୁନଅଁ ଲାଗିଁ । ସେ ହେଁ ଅପନା ଜହିଁ ।
ଖେଲ ଲାଏମଛୁକ ଏ ବାଃ ତୋବ୍ ବା
ଲୋଭ ନଜର ଜରେ ଲୋଭ ଜଦର ଜରେ
ଲୋଭ ଜରେ ତୋ ଜ୍ୟା ଜରେ ବାବ୍ ବା—
ସେ…ଧରତ ହେଁ ଘର ଅପମାଁ ହେଁ ଚଦର
ଓଁର କପ୍ ଡୋ ହମାରି ପରବାସ୍ତରେ ହାସ୍ତ ॥

ନାଚବାଲା—(ଟଙ୍କା ଦେଖି) ଏତେ ଟଙ୍କା !
ଧରଣୀ—ହଁ, ଆହୁରି ମିଳିବ ।
ନାଚବାଲା—ବାବୁ ?
ଧରଣୀ—ଅବିଶ୍ୱାସ ହେଉଛ ? ତୁ ଏମିତ ମାରିଖାଉଚୁ—ଗୋଡ଼ ଉପରେ ଗୋଡ଼ ପକାଇ ଆରାମରେ ଖାଇବୁ । ଆ—ମୋ ସାଙ୍ଗରେ ଚାଲିଆ ! ସବୁ ସୁବିଧା କରିଦେବି । ( ସେମାନଙ୍କୁ ନେଇ ଚାଲିଗଲେ )

## ଚତୁର୍ଥ ଦୃଶ୍ୟ—

[ ସାନେଣ ବାବୁଙ୍କ ଅଫିସ । କଥାବାର୍ତ୍ତା ହୋଇ ପ୍ରବେଶ କଲେ ଅମର ଓ ନିତ୍ୟାନନ୍ଦ । ]

ନିତ୍ୟାନନ୍ଦ—ଭେରି ନାଇସ୍ ଆଇଡ଼ିଆ ଅମର ବାବୁ ! (Very nice idea Amar Babu) । ସ୍ୱାଧୀନ ହେବାରୁ ଆସି ଭାରତ ସହରରେ ପୋଷ୍ଟିଙ୍ଗ୍ ହେବା ପରେ ଏମିତ ନୂଆ ଆଇଡ଼ିଆ (new idea) ରେ କାମ ହେବା ଉଚିତ । ଇଣ୍ଡିଆ ଗଭର୍ଣ୍ଣମେଣ୍ଟ (India Government) ର ଫୋର୍ଥ ପ୍ଲାନ୍‌ର ସକ୍‌ସେସ୍ ଟା ଆପଣଙ୍କ ପରି ନିସ୍ୱାପର, କର୍ମତତ୍ପର, ନବାନିସାଣୀ ବି. ଡ଼ି. ଓ.ଙ୍କ ଉପରେ ନିର୍ଭର କରେ ।
ଅମର—ତୁମେ ସବୁ ସିଟି (city) ରେ ରହୁଚ ନିତ୍ୟାନନ୍ଦ—ତେଣୁ ବ୍ଲକ୍‌ଗୁଡ଼ାକ ସମ୍ବନ୍ଧରେ ତୁମର ଆଇଡ଼ିଆ ନିହାତ ପୁଅର୍ (poor) । ସାହାସବୁ ଶୁଣିଚ ସେଗୁଡ଼ାକ ସବୁ ଫେୟାରି ଟେଲ୍ (fairy tale) ।
ନିତ୍ୟାନନ୍ଦ—ଫେୟାରି ? ମାନେ ଅପ୍‌ସରୀ ? ଅମର ବାବୁ ! ଆପଣଙ୍କ ବ୍ଲକରେ କେତେବେଳେ ଅପ୍‌ସରୀମାନେ ଝିଲମିଲ ଶାଢ଼ି ପିନ୍ଧି...

ଅମର—(ହସି) ଅଜବ୍ ତୁମର କଳ୍ପନା । କ୍ଲବ୍‌ର ସ୍ବକଣ୍ଠା ସ୍ଫୂର୍ତ୍ତିର କାରଣ ନୁହେଁ ବା କ୍ଲବ୍‌ରେ ଅପ୍ରସଙ୍ଗମାନେ ନ ଥାନ୍ତି । ପୁରୁଷ-ସ୍ତ୍ରୀ କ୍ଲବ୍ ମାଧ୍ୟମରେ ସମାନ ତାଳ ଦେଇ ପ୍ରଗତି କରୁଚନ୍ତି । ଜହାଡ ମଫସଲରେ ଗଢ଼ି ଉଠିଛି ମହିଳା ସମିତି, ବାଳିକା ସ୍କୁଲ୍, ମାତୃମଙ୍ଗଳ କେନ୍ଦ୍ର—ଦେଶ ଅଗେଇ ଚାଲିଚି ।

ନିତ୍ୟାନନ୍ଦ—ଅନ୍ଧାର, ଏ ଘୋ · ଘୋ—·ଘୋର ଅନ୍ଧାର—ତାହାର ଅବସ୍ଥା ବଦଳୁନି । ମଣ୍ଡୁ ତ ପଥରୁ ଯାଇ ଅପଥରେ ପାଣି ଟକିଏ ଖୋଜୁଚନ୍ତି ।

ଅମର—ହେଇପାରେ—ଅନ୍ଧାର ଭିତରୁ ଆମେ ଯେତେବେଳେ ଆଲୁଅ ଭିତରକୁ ଯାଉଚୁ, ଅନେକେ ହୁଏତ ନୂଆ ଆଲୋକର ଝଲକରେ ବାଟବଣା ହୋଇଯିବେ । କିନ୍ତୁ ଦିନେ ନା ଦିନେ ସବୁ ଠିକ୍ ହୋଇଯିବ । ଯୋଉ ଗ୍ରାମସେବିକାମାନଙ୍କୁ ତୁମେ ଅନ୍ୟ ଦୃଷ୍ଟିରେ; ଦେଖୁଚ, ସେଇମାନେ ହେବେ ଏ ଦେଶର କୋଟି କୋଟି ଅସହାୟର ଜନନୀ, ଭଗିନୀ । ସେଇମାନଙ୍କ ପରଶରେ ଜଳି ଉଠିବ ମୃତ ମଣିଷ ଜୀବନର ନୂତନ ସଞ୍ଜୀବନୀରେ ।

ନିତ୍ୟାନନ୍ଦ—ରାମ ରାମ ! ମୁଁ ସେମାନଙ୍କୁ ଅନ୍ୟ ଦୃଷ୍ଟିରେ ଦେଖୁଚି ? ଅମର ବାବୁ ମୋ ସାଙ୍ଗରେ ଥଟ୍ଟା କରୁଚନ୍ତି ?

ଅମର—ଥଟ୍ଟା ନୁହେଁ ନିତ୍ୟାନନ୍ଦ—ଯେତେ ଚେଷ୍ଟା କଲେ ବି ଗଧିଆ ବାଳକ ସମ୍ପୂର୍ଣ୍ଣ ମଣିଷ ହେବ ?

ନିତ୍ୟାନନ୍ଦ—ଛାଡ଼ନ୍ତୁ ଅମର ବାବୁ, ଆଜି ସନ୍ଧ୍ୟାରେ ଆସନ୍ତୁ ନା ସିନେମା ଯିବା—ବୁଟ୍ ମାଷ୍ଟର ଛବିରେ ସେସ୍ପିଅର ଶମ୍ମୀକପୁର ଓ ସୈରବାନୁ ।

ଅମର—ନାଇଁ ନିତ୍ୟାନନ୍ଦ—ସିନେମା ଯିବାକୁ ମୋର ବେଳ ନାହିଁ ।

ନିତ୍ୟାନନ୍ଦ—କୋଉଠୁ ବେଳ ଆସିବ ? ଯେତେବେଳେ ସିନେମା ଡାକିଲେ ନୋ (no) କରି ଦେଉଚନ୍ତି । ଦିନ ରାତି ସେଇସବୁ ମେହେନ୍ତ୍ରର ସାଙ୍ଗ ମୁସଲମାନ ବସ୍ତିରେ ବୁଲି ବୁଲି ଆପଣ ଷ୍ଟେଟସ୍ ଟାକୁ ଲୋ (low) କରି ଦେଲେଣି ।

ଅମର—ତୁମେ ବୁଝିବନି ନିତ୍ୟାନନ୍ଦ—ଏ ଦେଶର ଚାଷୀ । ଯାହାକୁ ତୁମେ ଅଯନ୍ତା ଓ ଅପଣ୍ଡାର ବୋଲି ନାକ ଟେକୁଚ—ସେଇ ପାଙ୍କ ଆଜି ବସ୍ତି ମୂଳାକ ତ ଅମର ଏଇ ଭାରତବର୍ଷର ହୃତ୍‌ପିଣ୍ଡ । ତା'ର ଉନ୍ନତ ନ ହେଲେ ଭାରତର ଉନ୍ନତ ଅସମ୍ଭବ ।

ନିତ୍ୟାନନ୍ଦ—ଗ୍ରେଟ୍‌ଲୁ—ଏ ସବୁ ବଡ଼ ବଡ଼ (big big) କଥାରୁ ମନେ ମିଳିବ କଣ ? ସଫା ସଫା କୁହନ୍ତୁ—ସିନେମା ସିବେ କି ନାହିଁ ?

ଅମର—ଆଲ୍ଲା ନିତ୍ୟାନନ୍ଦ ! ଏପରି ବେକାର ରହି ଥିବୁବେଳେ ସିନେମା ଦେଖିବାଠୁ ଗୋଟାଏ କିଛୁ କାମ କରନ୍ତୁ !

ନିତ୍ୟାନନ୍ଦ—କାମ—ମାନେ ସର୍ଭିସ୍ ? ଛି ଛି, ବାପଅବା ପୁଅ ହୋଇ ମୁଁ ସର୍ଭିସ୍ କରିବି ? ଜଣ ମୋଡ଼ ଘରେ ବସି ଖାଇବି । ତା'ପରେ ତ ମୁଁ ଖାଲି ବସିନି —ଏଇ ସିନେମା ଦେଖିବା ଭିତରେ ସିନେମା ବ୍ୟବସାୟର ଉନ୍ନତ ପାଇଁ ମୁଁ ପ୍ଲାନ୍ କରୁଚି । ଦେମ୍ଭେ କଲିକତା ଭେମିତି ସିନେମା ବ୍ୟବସାୟରୁ ପଇସା ଗୁଣୁଚନ୍ତି—ଆମ ଓଡ଼ିଶା ସେ ଦଉଡ଼ରେ କେତେ ବ୍ୟାକ୍‌ଓ୍ୱାର୍ଡ୍ !

ଅମର—ସିନେମା ଦେଖିଲେ କ'ଣ ସିନେମା ଶିଳ୍ପ ଅଗେଇଯିବ ନିତ୍ୟାନନ୍ଦ ! ସେଥିପାଇଁ ଲୋଡ଼ା ଯନ୍ତ୍ରପ ଚେଷ୍ଟା, ତ୍ୟାଗର କାରଣ ।

ନିତ୍ୟାନନ୍ଦ—କେମିତି ହବ ! ଆପଣମାନେ ତ ପାଠଶାଠ ପଢ଼ି ସିନେମାକୁ ଘୃଣା କଲେ ! ମୋ ପାଇଁ ଫରଓ୍ୱାର୍ଡ ମାର୍ଚ୍ଚ କରନ୍ତୁ ନା ଦେଖିବେ, ଓଡ଼ିଶାଟା ହଲିଉଡ୍ ହୋଇଯିବ । କୋଣ୍ଡାଟା ହେଉଯିବ ମେଟ୍ରୋଇନ୍ ଡ୍ରାଇଭ୍ । ତାପରେ ଗୋଟାକ ପରେ ଗୋଟେ ମୁକ୍ତିହେବ— ଓ୍ୱାନ୍ ବାଇ ଓ୍ୱାନ—ସେ ସେ...ସେ...

ଅମର—ଠିକ୍ ଅଛି—ତୁମ ପ୍ଲାନ୍ ସହିତ ହାତ ମିଳେଇ ଦେଲି—ବର୍ତ୍ତମାନ ମୁଁ କଣ କରିବାକୁ ହେବ ?

ନିତ୍ୟାନନ୍ଦ—ବିଶେଷ କିଛି ନୁହେଁ—ପ୍ରାଥମିକ ଖର୍ଚ୍ଚ ପାଞ୍ଚଟା ଟଙ୍କା ଦେଇ ଦିଅନ୍ତୁ ।

ଅମର—ପାଞ୍ଚଟା !

ନିତ୍ୟାନନ୍ଦ—ହିଁ—ମୋତେ ପାଞ୍ଚଟା—ଫାଇଭ୍ ରୁପିଜ୍ ପ୍ଲିଜ୍ ।

ଅମର—ନିଅ, ଏ ଟଙ୍କା ନେଇ ସିନେମା ଶିଳ୍ପର ଉନ୍ନତି କର । ସେ କ'ଣ ଲେଖୁଚ ?

ନିତ୍ୟାନନ୍ଦ—ଇଣ୍ଡୋ-ଓ୍ୱାଷ୍ଟ ପିକ୍‌ଚର୍ସ ପ୍ରାଇଭେଟ୍ ଲିମିଟେଡ୍‌ର ରସିଦ (ରସିଦ ଦେଇ) ମୁଁ ଆସୁଚି ଅମର ବାବୁ—ପରେ ପୁଣି ଦେଖା ହେବ—ଟା—ଟା ! (ନିତ୍ୟାନନ୍ଦର ପ୍ରସ୍ଥାନ । ଅମର ମଧ୍ୟ ଚାଲିଗଲେ ଏବଂ କଥାବାର୍ତ୍ତା ହୋଇ ପ୍ରବେଶ କଲେ ଧରଣୀ ଓ ଦିନେଶ ଦାସ)

ଦିନେଶ—ନା ନା ଧରଣୀ, ଏ ସବୁ ବ୍ୟବସାୟ ଏବେ ବନ୍ଦକର । ସରକାରଙ୍କ ଭିଜିଲାନ୍‌ସ ଡିପାର୍ଟମେଣ୍ଟ କେମିତି ତତ୍ପର ହୋଇ ଉଠିଚନ୍ତି ଦେଖୁନ ?

ଧରଣୀ—ସବୁ ଚଳିବ ଆଜ୍ଞା ! ଦୁର୍ନୀତି ଆଉ ଭିଜିଲାନ୍‌ସ ଦୁଇଟାଯାକ ସମାନ୍ତରାଳ ଭାବେ ଗତି କରିବେ । କେହି କାହାର ଟେର ପାଇବେନି ।

ଦିନେଶ—ନା ନା, ତୁମେ କଥାଟାକୁ ଏତେ ହାଲ୍‌କା ଭାବରେ ନିଅନା । ଗଭର୍ଣ୍ଣମେଣ୍ଟ ଇଜ୍ ମୋର ପାଓ୍ୱାରଫୁଲ୍ ଦାନ୍ ଦି ଇଣ୍ଡିଭିଜୁଆଲ । (Government is more powerful than the individual.) । ସରକାରଙ୍କ ଶକ୍ତି ଢେର୍ ବେଶି । ଅଳ୍ପଦିନର ଦୁନିଆଟା କେମିତି ବଦଳି ଗଲଣି ଦେଖୁନ ? ସ୍ୱାଧୀନତା ପରେ ସମସ୍ତଙ୍କୁ କହିବାର ଯେଉଁ ଅବାଧ ସ୍ୱାଧୀନତା ମିଳିଚି, ଏଥିରେ କାହାର ନିସ୍ତାର ନାହିଁ ।

ଧରଣୀ—ଦୁର୍ନୀତି ତ ମୁଁ ଚଳୁ କରିଦେଇଚି ଆଜ୍ଞା—ଆପଣଙ୍କ ଉପରେ କିଛି ଆଞ୍ଚ ଆସିବନି ।

ଦିନେଶ—ସତେ ନା କଣ ? କିନ୍ତୁ ଧରଣୀ—ଭାରତର ସ୍ୱରାଷ୍ଟ୍ରମନ୍ତ୍ରୀ ପର କହିଚନ୍ତି ଦୁଇବର୍ଷ ଭିତରେ ଦେଶଟାରୁ ଦୁର୍ନୀତି ଲୋପ କରିଦେବେ !

ଧରଣୀ—ସେଥିରୁ ତଡାଉଛି କଥା ସାର୍—ସେଥିରୁ ଆମକୁ ମିଳିବ କଣ ? ଦୁର୍ନୀତି ଲୋପ ହେଇଗଲେ ଏ ଦେଶର ସେଇକଟି ଲୋକ ବେକାର ହେଇଯିବେ ସାର ! ଆମେ ସବୁ ଚଳିବା କେମିତି ?

ପ୍ରାଣେଶ—ଜାଣିକି, ଯେଉଁ ଦେଶରେ କମ ମିଛ ଦୁର୍ନୀତି ନାହିଁ, ସେ ଦେଶର ଲୋକେ କ'ଣ ଉପାସ ଦେଉଛନ୍ତି ? ଆମେରିକା ଇଂଲଣ୍ଡ କଥା ଛାଡ଼—ଜାପାନ, ସ୍ୱିଜରଲାଣ୍ଡ ପ୍ରଭୃତି ଶ୍ରେଷ୍ଠ ଶ୍ରେଷ୍ଠ ଦେଶର ଲୋକେ କେମିତି ଜୀବନଯାପନ ! ଦୁର୍ନୀତି ବୃକ୍ଷର ଶାଖାପ୍ରଶାଖା ଖୁବ୍ ସୁଦୂର-ପ୍ରସାରୀ । ଦେଶରେ ଥରେ ଦୁର୍ନୀତି ବ୍ୟାପିଲେ ଆଉ ସହଜରେ ଯାଏନା । ତା'ପରେ ମୋର ଆଉ ଧନ ଦଉଲତ କଣ ହବ ? ଅନ୍ୟକୁ ଠକେଇବାର ଫଳ ମୁଁ ପାଇସାରିଛି । ମୋର ହୃଦୟ ଧନର ସ୍ମୃତି—ମୁଁ ତୁମକୁ କ କେବେ ଥରେ କହିନ !

ଧରଣୀ—ସେ ତ ଭାଗ୍ୟର ପରିହାସ ଆଜ୍ଞା ! ତେବେ ସାର୍—ମୁଁ କଣ କହୁ-ଥିଲି—ଆପଣ ଯଦି ଆଉ ଗୋଟିଏ ବିବାହ କରନ୍ତେ ଛଡ଼ କଣ ହୁଅନ୍ତା ?

ପ୍ରାଣେଶ—କଣ କହିଲ ଧରଣୀ—ମୁଁ ଆଉ ଥରେ ବିବାହ କରିବ ? ନା-ନା—ତା କଣ ସମ୍ଭବ ? କୁମ୍ୟାର ଓ୍ୱାଲ୍‌ପ ଇଜ୍ ଏ ଡ୍ୟୁଟି—ଟ୍ୱାଇସ୍ ଏ ଫଲି, ଥ୍ରାଇସ୍ ଏ ମ୍ୟାଡ଼ନେସ । (To marry once is a duty, twice a folly, thrice a madness) ଅଉତର ଶେଷ ଦିନ୍ଗୁଡ଼ିକୁ ମୁଁ ରଖିପାରିଲିନି—ସେଥିପାଇଁ ଜଟ ମୋର କପ୍ ହୁଏନା ।

ଧରଣୀ—ଓ—ଆପଣ ତାହେଲେ ପୁତ୍ରକନ୍ୟାଙ୍କ କଥା କହୁଚନ୍ତି ସାର୍ ? ସେ ତ ଭାଗ୍ୟର ଖେଳ ! ଏଇ ଜାତଗ୍ରାମ ଭିତରୁ ଆପଣ କାହାକୁ ଯଦି ପୋଷ୍ୟପୁତ୍ର କରିନଥନ୍ତେ···

ପ୍ରାଣେଶ—(ହସି) ପୋଷ୍ୟପୁତ୍ର ! ନା ନା ଧରଣୀ—ବଂଶର ଗତି ନାହିଁ ଏମିତି ସ୍ୱଭାବରୁ ଆସିଲେ ମୋ ବଂଶ ରକ୍ଷା ହୋଇଯିବ ? ପୁଅ ହେଉ କି ଝିଅ ହେଉ—ଅବୁ ଏଇ ମୋ ବଂଶର ପ୍ରଦୀପ । ସେ ସେତେ-

ହେଲେ ହୁଅନ୍ତ, ସବୁଠୁ ତାର ପୁ'ଟରେ କୌଣସି ଏକ ଚ୍ୟାରଟେବଲ୍ ଇନ୍‌ଷ୍ଟିଚ୍ୟୁସନ୍‌କୁ···

ଧରଣୀ—ନା-ନା, ତମେ ଭୁଲ୍ କରନ୍ତୁନି ଅଜ୍ଞା—ଯୋଉଠିକି ଦାନ କରିବେ ସବୁ ମାରି ଖାଇଯିବେ ।

ଧନେଶ—ଖାଇଯିବେ ?

ଧରଣୀ—ହଁ ଅଜ୍ଞା ! ତାପରେ କଥା କଣ କି, ଅରୁଣେଇ ଦିନେ ନା ଦିନେ ନିଶ୍ଚୟ ଫେରିଆସିବେ ।

ଧନେଶ—ଅରୁ ମୋର ଫେରିବ—କେଜାଣି ?

ଧରଣୀ—ସ୍ଵର୍ଗରେ ଥିଲେ ଭଗୀରଥ—ଗଙ୍ଗାକୁ ହୋଇଲେ ପ୍ରପନ୍ତ···କାଳ କାଳକୁ ଏକଥା ରହିଚ । ସ୍ଵର୍ଗରେ ଥିଲେ ନିଶ୍ଚୟ ଫେରିବେ ଅଜ୍ଞା !

ଧନେଶ—(ହସି) ସ୍ଵର୍ଗ !

(ଏଇ ସମୟରେ ନବାକର ଜ୍ୟୋତିଷର ପାଞ୍ଜି ଶୁଣାଗଲା)

ନବାକର—(ପ୍ରବେଶି) ସର୍ବାଣ୍ଟେ ଶାନ୍ତଃ ଭବନ୍ତୁ—

ଧରଣୀ—ଏଇ ତ ଜ୍ୟୋତିଷ ମହାପ୍ରଭୁ ଆସିଗଲେଣି ! ନୂଆ ଗ୍ରହଙ୍କ ଖବର କିଛି ଅଛି ?

ନବାକର—ନିଶ୍ଚୟ ଅଛି—ତା ନହେଲେ ନବାକର ଜ୍ୟୋତିଷକୁ କେତେ ଗ୍ରହ ପାଠ ପଢ଼ାଇ ଦେଇ ସାରିଲେଣି । ଗ୍ରହମାନଙ୍କର ସ୍ଥିତି ଓ ଅବସ୍ଥାନ···

ଧନେଶ—ନବାକର, ତୁମର ଗଣନା କେବେ'ଲ ହେଲା ସମସ୍ତେ କହନ୍ତି, ମାତ୍ର ଏ କ୍ଷେତ୍ରରେ ତା'ତ ଭୁଲ୍ ବୋଲି ପ୍ରମାଣିତ ହୋଇଗଲା ! ତୁମେ କହିଥିଲ ନା ଅରୁଣ ମୋର ଫେରିଆସିବ ?

ନବାକର—କହିଥିଲି ଅଜ୍ଞା !

ଧନେଶ—କାହିଁ—ଅରୁ ମୋର ଏ ଯାଏ ଫେରିଲାନି ?

ନବାକର—ପାଠ କହୁଛି ଫେରିବେ ଆଜ୍ଞା ! (ଗଣନା କରୁ କରୁ) ହଁ ହଁ ବୁଧବାର ଅଜ୍ଞା ! ଦିଗ୍‌ଗନ୍ଧ କୋଣ—ଜଳାଶୟ—ଅଥ ବ୍ରାହ୍ମଣ ଗୋତ୍ର

ଜାଲୁଆ—ଆଜ୍ଞା ରହୁ — ଦେଖନ୍ତୁ ସ୍ୱର୍ଣ୍ଣାଳଙ୍କାର ଖଣ୍ଡେ ନାହିଁ ଅଙ୍ଗ— ଖାଲି ହାତ ଚୂଡ଼ା ।

ଧରଣୀ – ଶୁଣିଲ ଜ୍ୟୋତିଷ ମହାପ୍ରଭୁ, ଏଥର ଯଦି ତୁମ କଥା ମିଛ ହୁଏନା, ତୁମର ଭିଟା ମାଟି ଉଠେଇ ଦେଇ ଶଙ୍ଖ ବନେଇ ଦେବି ।

ନସ୍ବକାର—କୋପ କରୁଛନ୍ତି କାହିଁକି ଆଜ୍ଞା ! ଜ୍ୟୋତିଷ ପାଠରେ ମୁଁ ଧୁରନ୍ଧର । କେତେ କେତେ ପଣ୍ଡିତଙ୍କୁ ପାଠରେ, ଶାଠରେ, ହାଟରେ, ବାଟରେ ପରାସ୍ତ କରିଛି । ମୁଁ କି କହୁଥିଲି ଅଙ୍ଗ, ଏଥର ଯଦି ମୋ ଗଣନା ଭୁଲ ହୁଏ ମୁଁ ଆଉ ଏ ପାଠ ଧରିବି ନାହିଁ । ହେଲେ…

ଘଟେନଣ—ହେଲେ ଆଉ କଣ ନସ୍ବକାର ? କୁହ, ତୁମ ମନ ଭିତରେ ଯାହା ଅଛି ପ୍ରକାଶ କର । ଅସୁର ଭଲ ପାଇଁ ମୁଁ ସବୁ କିଛି କରିବି ।

ନସ୍ବକାର—ସିଏ କିଛି ନୁହେଁ ଅଙ୍ଗ—ଗୋଟିଏ ଗ୍ରହ ଟିକେ ଗୋଳମାଳ କରୁଚି । ତାର ଶାନ୍ତି ପାଇଁ…

ଘଟେନଣ—ଯାହା କିଛି ପ୍ରୟୋଜନ ତାହା ତୁମେ କର ନସ୍ବକାର !

ଧରଣୀ—ସେଥିପାଇଁ କଣ କଣ ଦରକାର କହିଯାଅ ।

ନସ୍ବକାର—ଗ୍ରହ ଶାନ୍ତି ପାଇଁ ଏକାବନ ଟଙ୍କା…

ଘଟେନଣ—ଧରଣୀ ନସ୍ବକାରକୁ ଏକାବନ ଟଙ୍କା ଦିଅ । ଭଲଭାବରେ ସେ ପୂଜାର ବନ୍ଦୋବସ୍ତ କରୁ । ମୋର ମନ କହୁଚି, ଅସୁ ମୋର ଜବତ ଅଛି — ନଷ୍ଟ ଅଛି । (ପ୍ରସ୍ଥାନ କଲେ ଘଟେନଣ । ଧରଣୀ ଟଙ୍କା ଗଣି କଣ୍ଟି ଦେଲେ ନସ୍ବକାରକୁ )

ଧରଣୀ—ହୁଁ ସେତିକି କେବେ ହେବନି—ଯାଅ ।

(ଟେଇ ବାହାର କରିଦେଲେ)

ନସ୍ବକାର—ଓଁ ଶାନ୍ତିଃ ଓଁ ଶାନ୍ତିଃ (ପ୍ରସ୍ଥାନ)

## ପଞ୍ଚମ ଦୃଶ୍ୟ—

[ ଧରଣୀ ଦାସର ବାହାର ଘର । ନାଚବାଲାର ଝିଅ ଅହଲ୍ୟା ନାଚୁଛି । ହାତରେ ତାର ବ୍ୟାଣ୍ଡେଜ୍ । ବାପ ପୁରଞ୍ଜ ତବଲା ବଜାଉଚି । ଧରଣୀ ପ୍ରବେଶ କରି –

ଧରଣୀ – ବନ୍ଦ କର ଏ ନାଚ !

ପୁରଞ୍ଜ – ନାଇଁ ବାବୁ ! ସକାଳୁ ସକାଳୁ ଅହଲ୍ୟାର ନାଚ ଟିକେ ରିହର୍‌ସାଲ କରଉଥିଲି ।

ଧରଣୀ – ହୋଃ, ରିହର୍‌ସାଲ କରୁଚ — ଆଉରେ ଆମ ରିହରସାଲ ହବ । ପଳା— ଘର ଭିତରକୁ ପଳା ।

ପୁରଞ୍ଜ – ବାବୁ, ଆମକୁ ତମେ ମହି ନଈରେ ଭସେଇ ଦବନି ତ ?

ଧରଣୀ – ମହି ନଈରେ ? ତୁମକୁ ନେଇ ଅଧା ସ୍ୱର୍ଗରେ ବସେଇ ସାରଲିଣି, ଆଉ ଭାସିବ କଣ କହୁଚ ? ବ୍ରଜପ୍ରସାଦ—ସେ ଯେଉଁ ସୁଝ ସଞ୍ଜୋଗ – ହେଇଥିରେ ତୁମ ଝିଅ ଖାଲି ପଡ଼ିଶବ । ତାପରେ ମୋ ପୁଅ କଲ୍ୟାଣ ମହନ୍ତି ତାର ବାହାଘର ହେଇଗଲେ ନା—ରାଜରାଣୀ ! ଆଉ ତୁ ତ ହବୁ ରାଜଶ୍ୱଶୁର !

ପୁରଞ୍ଜ – ହଉ ବାବୁ, ତୁମକୁ ଭରସା କରି ଅଛିଚ— ତୁମେ ଯାହା କରିବ ।

ଧରଣୀ – ଆମର ରିହର୍‌ସାଲ ହବ । ଅହଲ୍ୟା, ତତେ ଯାହା ସବୁ କହିଥିଲି ମନେରଖିଚୁ ?

ଅହଲ୍ୟା – ହଁ ଅଛି ।

ଧରଣୀ – ଯେମିତ କହିଥିଲି – ଠିକ୍ ସେମିତ ଆ । (ପୁରଞ୍ଜ ତବଲା ନେଇ ଚାଲିଗଲା । ପରେ ଅହଲ୍ୟା ଭିତରକୁ ଚାଲିଗଲା ଓ ଧରଣୀ ଚେୟାର ଖଣ୍ଡକରେ ବସି ଖବରକାଗଜ ପଢ଼ିଲା । ପାଟନଣ ବାବୁଙ୍କ ଅଭିନୟ ସେ କରୁଛି ଆଉ ଅହଲ୍ୟା କରୁଚି ଅରୁଣାର ଅଭିନୟ । )

ଅହଲ୍ୟା – (ପ୍ରବେଶି) ବାପା – ବାପା !

ଧରଣୀ – ଏଁ ···ବାପା ? (କାଗଜ ଫିଙ୍ଗି ଦେଇ) କିଏ ତୁ ?

## ଦ୍ୱିତୀୟ ଅଙ୍କ । ପଞ୍ଚମ ଦୃଶ୍ୟ

ଅହଲ୍ୟା — ମତେ ତୁମେ ଚିହ୍ନି ପାରୁନା ବାପା ? ମୁଁ ପରା…

ଧରଣୀ — ଲଷ୍ଟପାଦ୍ୱେବଙ୍କ ନାତୁଣୀ ? କଏ ତୁ ?

ଅହଲ୍ୟା — ତୁମ ଝିଅ !

ଧରଣୀ — ମୋ ଝିଅ ତ ବାଲିଯାତ ମେଳାରେ ହଜିଚି — ତୁ ମୋ ଝିଅ ହେଲୁ କେମିତି ?

ଅହଲ୍ୟା — ମୁଁ ସେଇ ପରା — ତୁମ ଝିଅ !

ଧରଣୀ — ଭୁଲ୍ କରୁଚୁ — ତୋ ବାପାଙ୍କ ନାଁ କଣ ?

ଅହଲ୍ୟା — ମୋ ବାପାଙ୍କ ନାଁ ଧନେଶଚନ୍ଦ୍ର ଦାସ ।

ଧରଣୀ — ତୋ ନାଁ କଣ ?

ଅହଲ୍ୟା — ମୋ ନାଁ ଅରୁଣା…ଅରୁ…

ଧରଣୀ — ଅରୁ ? ନା ନା, ତୁ କାହିଁକି ମୋ ଅରୁ ହେବୁ ? ମୋ ଅରୁଣା ତ ତୋଠୁ କେତେ ସାନ !

ଅହଲ୍ୟା — ବାପା !

ଧରଣୀ — ଫେର୍ ବାପା ?

ଅହଲ୍ୟା — ଯେତେବେଳେ ହଜି ଯାଇଥିଲି, ସେତେବେଳେ ମିନା ସାନ ଥିଲି — ହେଲେ ସ୍ତା ଭିତରେ କେତେ ବର୍ଷ ବିତିଗଲାଣି ! ମୁଁ କଣ ସବୁଦିନେ ସାନ ଥାଆନ୍ତି ?

ଧରଣୀ — ଅରୁଣା ଆଜି ଥିଲେ ଏମିତି ହୋଇଥାନ୍ତା — ତୁ ସତ କହୁଚୁ ?

ଅହଲ୍ୟା — ମୁଁ ସତ କହୁଚି — ବାଲିଯାତ ମେଳାରୁ ଗୋଟେ ବାବାଜି ମତେ ମନ୍ଦିର ନେଇଗଲେ ।

ଧରଣୀ — ତାପରେ ?

ଅହଲ୍ୟା — ତାପରେ ସେ ବାବାଜିଙ୍କ ମେଳରେ କେତେ ତୀର୍ଥ ମୁଁ ବୁଲିଲି — କାଶୀ, ଗୟା, ହରିଦ୍ୱାର…

ଧରଣୀ — ତାପରେ ?

ଅହଲ୍ୟା — କେତେ ଯେ ନାଟକୁ ସ୍ତା ଭିତରେ…

ଧରଣୀ—କଣ କହୁଚୁ ? ନାଚିଚୁ ? ସ୍କୁଲ୍—ତତେ ପରା ମନା କରିଥିଲି ନାଚଗୀତ କଥା କହିବୁନି ବୋଲି ? ଅହଲ୍ୟା ! ସବୁ ·ରୁ ପୋଡ଼ି ଖାଇଲି । (ଅହଲ୍ୟାର ବାଣ୍ଡେକ ହାତ ଧରିନେଲେ)

ଅହଲ୍ୟା—ହାତଟା ଛାଡ଼ନ୍ତୁ ବାପୁ !

ଧରଣୀ—କାହିଁକି ? କଣ ହେଲାକି ?

ଅହଲ୍ୟା—ହାତଟା ଧରନ୍ତୁନି ବାପୁ—ମୁଁ ଆଗରୁ ମନାକରୁଚି ହାତରେ ନାଁ ଫାଁ କୁହେଇବନି ବୋଲି । ଆପଣ ତ କିଛି ମାନିଲେନି । ହାତଟା ପାଚିଯାଇ ଭାରି କଷ୍ଟ ହେଉଚି ।

ଧରଣୀ—ନାଁଟା ନ ଲୁଚିଲେ ପାଠନେଇ ବାବୁ ତତେ ତାଙ୍କ ଝିଅ ବୋଲି ସ୍ୱୀକାର କରିବେନି । ତାଙ୍କ ଝିଅ ଅରୁଣା ହାତରେ ଏମିତି ନାଁ ଲୁଚା ଯାଇଥିଲା । ହେଲେ ତୁ ମୋ ପ୍ଲାନ୍‌ଟାକୁ ସବୁ ଉଣ୍ଡୁର୍ କରିଦେଲୁ ।

ଅହଲ୍ୟା—କାହିଁକି ବାପୁ ? ତୁମେ କହିଥିବା ମୁତାବକ ମୁଁ ତ ସବୁକଥା ଠିକ୍ ଠିକ୍ କହୁଚି ।

ଧରଣୀ—କୋଉଠି ଠିକ୍ କହୁଚୁ ? ସ୍କୁଲଅଡ଼େ ନାଚୁଥିଲୁ ବୋଲି କହିବାକୁ ମୁଁ ମନାକରିଥିଲି ନା ? ତୁ ଯେ ଗୋଟେ ନାଚୁଆଣୀ ଏକଥା ସେ ଯେମିତି କସ୍ମିନ୍‌କାଳେ ଜାଣି ନ ପାରନ୍ତି !

ଅହଲ୍ୟା—ସେଇଟା ଭୁଲ୍ ହୋଇଗଲା—ହେଲେ ଏଥର ଠିକ୍ ଠିକ୍ କହିବି ।

ଧରଣୀ—କହ—ତା ପରେ !

ଅହଲ୍ୟା—ସ୍କୁଲଅଡ଼େ ବୁଲି ବୁଲି ଶେଷରେ ପଡ଼ିଥିଲି କଲିକତାରେ ।

ଧରଣୀ—ହୁଁ, ଏଇସବୁ ବୁଲିବା ଭିତରେ ତୋ ବାପ କଥା ତୋର ମନେ ପଡ଼ୁଥିଲା ?

ଅହଲ୍ୟା—ମନେପଡ଼ିବନି ? ମୁଁ ତ ପ୍ରଥମ କେତେଦିନ ଖାଇବା ପିଇବା ଛାଡ଼ି କରିଦେଇଥିଲି । ବାବାଜୀ ଯେତେ କହିଲେ ମଧ୍ୟ ମୁଁ ଖାଉ ନଥିଲି ।

ଧରଣୀ—ତା'ଙ୍କ ? ତତେ ଡର ହେବ ରୋଗ ଲାଗିଲେ ଅରୁଣ ?

ଅହଲ୍ୟା—ମୁଁ କେମିତି ଖାଆନ୍ତି ? ତୁମେ ଖୁଆଇ ନ ଦେଲେ, ମୁଁ ତ ଖାଏନା !

ଧରଣୀ—ଆଚ୍ଛା—ତୋ ବୋଉକଥା ତୋର ମନେପଡ଼ୁଥିଲା ?

ଅହଲ୍ୟା—ବୋଉ ? ସେ ଆଜ ଥିଲେ······(କାନ୍ଦିଲା)

ଧରଣୀ—ଆଉ ମା, କାନ୍ଦନା !

ଅହଲ୍ୟା—କଣିଆ ଘରେ ଅଛୁ ବାପା ?

ଧରଣୀ—ଅଛୁ ମା—ଜ୍ୱର ଦୁର୍ବା ହେଉଯାଉଛ !

ଅହଲ୍ୟା—ଏବେ ତୁମେ ମତେ ଚିହ୍ନି ପାରିଲ ? ବାପା—ମୁଁ ତୁମ ପ୍ରିୟ ଅରୁଣ !

ଧରଣୀ—ଆଉ ଚେଷ୍ଟିବାରେ ବାକ ନାହିଁ—ତୁ ମୋ ପ୍ରିୟ—ଡାକ୍ 'ବାପା' ବୋଲି !

ଅହଲ୍ୟା—ବାପା !

ଧରଣୀ—(କୁଣ୍ଢେଇପକେଇ) ମୋ ପ୍ରିୟ ··

(ଏଇ ସମୟରେ ଚମ୍ପା ପ୍ରବେଶକଲା)

ଚମ୍ପା—ଆଜ ଦରହାଣ୍ଡିକୁ କଣ—ମିଶିପଲୁ ଦେଖ ! ଭିତରେ ଭିତରେ ଖୁବ୍ ତ ଅଗେଇ ଯାଇଛ ବଦ୍‌ମାସ୍ ଟୋକା ! (ମାରିବାକୁ ଉଦ୍ୟତ)

ଧରଣୀ—ହାଁ-ହାଁ ।···କ୍ରୋଧ ସମ୍ବରଣ କର ଚମ୍ପାବତୀ ! ସେ ପୁଣି କ ମୂର୍ତ୍ତି ଧାରଣ କଲ ?

ଚମ୍ପା—ସେସବୁ କଥା ରଖିଦଅ ।

ଧରଣୀ—ରଖିଦେଲି···

ଚମ୍ପା—ମିଶିପଲୁ ଦେଖ ! ମତେ ଅଗ ବୁଝ ଏ ପ୍ରିୟ କଏ ? ଏ ତୁମର ପ୍ରିୟ କେମିତି ହେଲ ? ଆରେ, ମୁଁ ସରଳ ଭାବରେ ସ୍ୱାକ୍ଷ ବିଶ୍ୱାସ କରୁଥିଲି ? କୋଉଠି ସ୍ୱାର ମା ଅଛୁ—ବୁଝ ?

ଧରଣୀ—ତା ମା—ମୁଁ ତ ଜାଣେନା !

ଚମ୍ପା—ମିଣିପକୁ ଦେଖ ! ବଗଡ଼ି ଆଖି ବୁଜି ଦୁଧ ପିଉଛି—ନା ? ସତରେ ମୁଁ କହୁ ଜାଣିପାରୁନ ? ଯରେ, ପୁରୁଷ ଲୋକଙ୍କୁ ଯଦୌ ବିଶ୍ୱାସ ନାହିଁ । ହଉଏ, ମୋତେ ବିଶ୍ୱାସରେ କଥ ଦେଉଚ ? ତୁମର ପୁଣି ଆଉ ଗୋଟିଏ ଝିଅ ଆସି ଏଡ଼ିଟିଏ ହେଲଣି ?

ଧରଣୀ—ଦୁର୍ଭାଗ୍ୟ ଚମ୍ପାବତୀ—ସେ ଝିଅ ମୋ ଝିଅ ନୁହେ !

ଚମ୍ପା—ତୁମ ଝିଅ ନୁହେଁ ଯଦି ତୁମକୁ ସେ ବାପ ବୋଲି ଡ଼ାକୁଚ କାହିଁକି ?

ଧରଣୀ—ଓ—ଏଇ କଥା ? ସେ ଗୋଟିଏ ଗହନ ରହସ୍ୟ । ଶୁଣ, ମୁଣ୍ଡ ଥଣ୍ଡା-କର । ମୁଁ ତୁମକୁ ସବୁ ଠିକେ ଠିକେ ବୁଝେଇ ଦେବି— ଶୁଣିଲ !

ଚମ୍ପା—କଣ ମତେ ଆଉ ବୁଝେଇବ—ଜାଣି ନା ପାରିଣ ।

ଧରଣୀ—ବହୁତ କଥା ଅଛି—ସେ ଝିଅ କଏ—ଆଉ କାହିଁକି ତାର ଏଠି ଅବସ୍ଥାନ, ଭବିଷ୍ୟତରେ କୋଉଠିକି ସେ ଯିବ, ମୁଁ ତାର କଏ, ଆଉ ତୁମେ ବା ତାର କଏ, ଏସବୁ ଠିକେ ଠିକେ ବୁଝେଇଦେବି । ଆସ—ଆଉ ତୁମେ ବୁଝିଯିବା ପରେ ନା, ମୋ ବୁଦ୍ଧିକି ଜରୁର ତାରିଫ୍ କରିବ ।

ଚମ୍ପା—ମିଣିପକୁ ଦେଖ ! ସତ କହୁଚ—ସେ ଝିଅ ତୁମର ନୁହେଁ ?

ଧରଣୀ—ତୁମ ରାଣ !

ଚମ୍ପା—ସ୍ୱାମୀଙ୍କ ପାଦେ ରାଣଟା ପକେଇଦେଲ ? ହଁ ନ ପକେଇବ କାହିଁକି—ମୋ ମରିବାକୁ ତ ଅନେଇ ବସିଚ !

ଧରଣୀ—ଭଗବାନଙ୍କ ରାଣ ଚମ୍ପାବତୀ ! ସେ ଗୋଟିଏ ଗହନ କଥା—ବହୁତ ଲମ୍ବ ହେବ । ଆସ—ସବୁ ଗୋଟି ଗୋଟି କରି ବୁଝେଇ ଦେବି ।
(ଚମ୍ପାକୁ ଟାଣି ନେଇ ଯିବାକୁ ବସିଲେ)

ଚମ୍ପା—ମିଣିପକୁ ଦେଖ ! ମଲ—ଟାଣୁଚ କାହିଁକି ? ମୁଁ ଯାଉନକ !

ଧରଣୀ—ଆସ ଆସ—ଲଗ୍ନଯୋଗ ।

(ଉଭୟଙ୍କର ପ୍ରସ୍ଥାନ । ଅହଲ୍ୟା ବସି ରହିଲେ । ପଛପଟୁ ନିତ୍ୟାନନ୍ଦ)

ନିତ୍ୟାନନ୍ଦ—ଡାର୍ଲିଂ, ତୁମେ ଏମିତ ମୁହଁ ଶୁଖେଇ ବସିଚ କାହିଁକି ପିତୃଦେବ କଣ ତୁମକୁ କିଛି କହିଚନ୍ତି ? (ଅହଲ୍ୟା ମୁହଁ ବୁଲେଇ

ବସିଲ) ତୁମ ସହିତ ମୋର ବାହାଘର ହେବ—ଆଉ ତୁମେ ମୋ ପ୍ରତି ଏପରି ବ୍ୟବହାର ଦେଖାଉଛ ?

ଅହଲ୍ୟା—ନିତ୍ୟାନନ୍ଦ ବାବୁ, ଆପଣ ବର୍ତ୍ତମାନ ଯାଆନ୍ତୁ—ମୋ ମନ ଭଲନାହିଁ ।

ନିତ୍ୟାନନ୍ଦ—ଯିବି—କୋଉଠିକି ଯିବି ? ତୁମର ଏ ଶୁଖିଲ ମୁହଁ ଦେଖି ପ୍ରାଣଟା ମୋର ଭେଁ ଭେଁ କରି କାନ୍ଦି ଉଠୁଛି । ଶୟନେ ସ୍ୱପନେ ଜାଗରଣେ ମୁଁ ଦେଖୁଛି ତୁମର ରୂପ । ତୁମକୁ ଛାଡ଼ି ମୁଁ କୁଆଡ଼େ ଯିବି ଡାର୍ଲିଂ ?

ଅହଲ୍ୟା—ଓଃ—ଭଗବାନ—ପ୍ଲିଜ୍—ଆପଣ ଦୟାକରି ଯାଆନ୍ତୁ—ମତେ ବିରକ୍ତ କରନ୍ତୁନ !

ନିତ୍ୟାନନ୍ଦ—ଯାଇପାରିବିନ ।

ଅହଲ୍ୟା—ତାହେଲେ ମୁଁ ଚାଲିଯାଉଛି ।

ନିତ୍ୟାନନ୍ଦ—ଡାର୍ଲିଂ ! ତୁମେ ଯଦି ଚାଲିଯିବ, ମତେ ସାଙ୍ଗରେ ନେଇ-ଯାଅ—ତୁମକୁ ଛାଡ଼ି……(ହାତ ଧରନ୍ତି)

ଅହଲ୍ୟା—ଓଃ…ଛାଡ଼ନ୍ତୁନା !

ଚମ୍ପା—(ପ୍ରବେଶି) ଅ ମା'—କେତେ ପରିଶ୍ରମ କଲୁଣି—ଖାଇବୁ ଆ ! ମୁଁ ନଜାଣି କେଉଁଠି କେତେ କଥା କହୁଛି ! ଚାଲ୍ ମା ଜଳଖିଆ ଟିକେ ଖାଇବୁ ଚାଲ୍ । (ଯାଉଥିଲେ)

ନିତ୍ୟାନନ୍ଦ—ବୋଉ—ଏପରି ଏକତରଫା କଥା ମତେ ଭଲ ଲାଗେନ । ମତେ କାହିଁକି ଜଳଖିଆ ଖାଇବାକୁ ଡାକୁନୁ ? ଘଣ୍ଟେ ଆଗରୁ ଜଳଖିଆ ଖାଇଥିଲି—ହଜମ ହେଇଗଲାଣି ।

ଚମ୍ପା—ହଉ ତୁ ବି ଚାଲ !

(ନିତ୍ୟାନନ୍ଦ ଅହଲ୍ୟାର ହାତ ଧରି ଆଗେଇଲାବେଳେ—)

ଆରେ…ଆରେ…

ନିତ୍ୟାନନ୍ଦ—ଓଃ—ଭୁଲ୍ ହେଇଗଲା । (ସମସ୍ତଙ୍କର ପ୍ରସ୍ଥାନ)

## ଷଷ୍ଠ ଦୃଶ୍ୟ—

[ଜଗନ୍ନାଥଙ୍କ ଫଟୋ ନିକଟରେ ଅମୀନା ବସି ଭଜନ ଗାଉଥାଏ ।]

—ଭଜନ—

ଚକାନୟନ ହେ
ପଲକ ପକାଅ ନାହିଁ ॥
ପଲକ ବୁଜିଲେ ଆଖି ତୁମ ଏଇ
ଦୃଷ୍ଟି ରହୁବ କାହିଁ ॥
ନୀଳାଚଳେ ତୁମେ ଉଡାଉଛ ବାନା
ଯେ ଡାକେ ସେ ପାଏ—ତୁମର କରୁଣା
ହେ କରୁଣାନିଧି ବାଛି ବିଚାର ତ
ତୁମ ପାଖେ କିଛି ନାହିଁ ॥
ଯବନ ଜନମ ଶାଲବେଗ ପାଇ
ସେ ପୁଣି ତୁମର ଚରଣେ ଧ୍ୟାଇ
ଡାକିଲା ତୁମକୁ ଶରଣାର୍ଥୀର
ସ୍ଥାନ ଦେଲ ତ ବଢାଇ ॥

(ଭଜନ ଶେଷ ହେବାର କିଛି ସମୟ ପୂର୍ବରୁ ପ୍ରବେଶ କରିଥିଲେ ଅମର । ସେ ମୁଗ୍ଧ ହୋଇଥିଲେ ଭଜନ ଶୁଣି । ଅମୀନା ଭଜନ ଗାଇସାରି ବାହାରକୁ ଆସିଛି । )

ଅମର—କିଏ ଶୁଣିବ ! (ଅମୀନା ଠିଆହେଲା)
ବେଶ୍ ସୁନ୍ଦର ଭଜନଟିଏ ଗାଇଲ ତ ! (ଅମୀନା ଲଜ୍ଜାସଙ୍କୁଚିତା)
ନା-ନା, ଭଲ କରନା ।

ଅମୀନା—ବାବୁ !

ଅମର—ତୁମ ଭଜନଟି ବେଶ୍ ସୁନ୍ଦର ଲାଗିଲା । ତୁମର କଣ୍ଠ ଅତି ଚମତ୍କାର !

ଅମୀନା—ବାବୁ !

ଅମର—ତୁମ ନା କଣ ?

ଅମୀନା—ମୋ ପରିଚୟ ଜାଣିବାରେ ଆପଣଙ୍କର ଲାଭ ?

ଅମର—ଲାଭ-କ୍ଷତିର ହିସାବ କରିବାଇ ସବୁ କଥା କଣ କରାଯାଏ ? ତୁମେ ବେଶ୍ ସୁନ୍ଦର ଗାଇ ପାରୁଚ । ସରକାରୀ କାମରେ ମୁଁ ଇଆଡ଼େ ଆସିଥିଲି— ତୁମ କଣ୍ଠର ମୂର୍ଚ୍ଛନା ଶୁଣି ଅଟକି ଆଗେଇ ପଡ଼ିଲି ! ମତେ ଖୁବ ଭଲ ଲାଗିଲା ତୁମର ଏ ଭଜନଟି ।

ଅମୀନା - ବାବୁ, ମୋ କଣ୍ଠର ପ୍ରଶଂସା ଏତେ କରନ୍ତୁ ନାହିଁ !

ଅମର—ଯାହା ସତ ତା ମୁଁ କହିବିନି କାହିଁକି ? ଆଉ ଏ ପ୍ରକାର ଦୁର୍ବଳତା ଆମ ପାଖରେ ରହିବା ଉଚିତ ନୁହେଁ । ସୁନ୍ଦରର ପ୍ରଶଂସା କରିବା କଣ ଅନ୍ୟାୟ ?

ଅମୀନା—ବାବୁ, ଆପଣ ପାଠ ପଢ଼ିଚନ୍ତି । ସୁନ୍ଦରରେ ମୁଁ କଣ ଆପଣଙ୍କ ସାଙ୍ଗରେ ପାରିବି ?

ଅମର—ହାର୍ ମାନିଲ ତ ? ଏଥର କୁହ ତୁମର ନାଁ କଣ !

ଅମୀନା—ମୋ ନାଁ ଅମୀନା ।

ଅମର—ଅମୀନା ?

ଅମୀନା—ହଁ

ଅମର—ବେଶ୍ ଚମତ୍କାର ନାଁଟିଏ ତ ! ତୁମେ କଣ ଏଇ ଘରେ ରୁହ ?

ଅମୀନା—ହଁ

ଅମର—ତୁମର ଆଉ ସବୁ କିଏ ଅଛନ୍ତି ?

ଅମୀନା—ବାବାଙ୍କ ଛଡ଼ା ଏ ଦୁନିଆରେ ମୋର ଆଉ କେହି ନାହାନ୍ତି ।

ଅମର—ତୁମ ବାବାଙ୍କ ନାଁ କଣ ? ସେ କଅଣ କରନ୍ତି ?

ଅମୀନା—ମୋ ବାବାଙ୍କ ନାଁ ସମସେର୍ ଅଲ୍ଲି ।

ଅମର—ଏଁ !

ଅମୀନା—କଣହେଲା ?

ଅମର—ନା-ନା, କିଛି ନୁହେଁ ! ଅଚ୍ଛା, ତୁମେ ଜଗନ୍ନାଥଙ୍କ ଜଣାଣ ଗାଉଥିଲ ନା ?

ଅମୀନା—ହଁ ; ଗୀତରେ କଣ କିଛି ତ୍ରୁଟି ରହିଗଲା ?

ଅମର—ତ୍ରୁଟି ! ନା-ନା-ନା, ଅଦ୍ଭୁତ ଭାବରେ ତୁମେ ଗାଉଚ । ଜଗନ୍ନାଥଙ୍କ ପାଇଁ ପ୍ରାଣରେ ତୁମର କି ଦରଦ—କଣ୍ଠରେ ତୁମର କି ଉନ୍ମାଦନା ! ହେଲେ ତୁମେ କେମିତ ଏ ଭଜନ ଗାଉଛ ?

ଅମୀନା—କାହିଁକି ବାବୁ, ଏଥିରେ ଆଶ୍ଚର୍ଯ୍ୟ ହେବାର କଣ ଅଛି ? ମୋ ବାବା ତ କହନ୍ତି—ଭିନ୍ନ ଧର୍ମରେ ଭଗବାନଙ୍କ ସିନା ଅଲଗା ଅଲଗା ନାଁ ଦିଆହେଇଚି—କିନ୍ତୁ ସେ ତ ଏକ । ଆଲ୍ଲା-ଯୀଶୁ-ଜଗନ୍ନାଥ ସବୁ ତ ସେଇ ଭଗବାନଙ୍କ ନାଁ !

ଅମର—ତୁମ ବାବା ତୁମକୁ ଏଇ କଥା କୁହନ୍ତି ?

ଅମୀନା—ସେ ତ ଆହୁରି କେତେ କଥା କହନ୍ତି !

ଅମର—କଣ କହନ୍ତି ?

ଅମୀନା—କହନ୍ତି, ଜଗନ୍ନାଥ ସମସ୍ତଙ୍କର । ମୁସଲମାନ ଜାତିରେ ଜନ୍ମହେଇ ସାଲବେଗ ତ ପୁଣି ଜଗନ୍ନାଥଙ୍କର ଭକ୍ତ ହେଇପାରିଥିଲେ ?

ଅମର—ଆଶ୍ଚର୍ଯ୍ୟ ! (ଚକିତ)

ଅମୀନା—କଣ ଭାବୁଚନ୍ତି ସେ ?

ଅମର—ଭାବୁଚି, ତୁମର ସେଇ ବାବାଙ୍କ କଥା । ସେ ନିଶ୍ଚୟ ଜଣେ ଆଦର୍ଶ ପୁରୁଷ ! ଆମର ଏ ଭାରତବର୍ଷର ପ୍ରତ୍ୟେକ ନରନାରୀ ଜାତିଧର୍ମ-ନିର୍ବିଶେଷରେ ଯଦି ତାଙ୍କର ଆଦର୍ଶ ମାନିନିଅନ୍ତି, ତେବେ ମହାତ୍ମାଗାନ୍ଧିଙ୍କ ସ୍ୱପ୍ନ ସାର୍ଥକ ହୁଅନ୍ତା । ହିନ୍ଦୁ, ମୁସଲମାନ, ବୌଦ୍ଧ, ଖ୍ରୀଷ୍ଟିଆନ୍ ସଭିଏଁ ଗୋଟିଏ ପରିବାର ଭଳି ଚଳନ୍ତେ—ଉଜ୍ଜ୍ୱଳ ହୁଅନ୍ତା ଭାରତ ଜନନୀର ମୁଖ ।

ଅମୀନା—ବାବୁ ! ଆପଣଙ୍କ ପରିଚୟ ତ ଏଯାଏ ମତେ ଦେଲେନି !

ଅମର—ମୋ ପରିଚୟ—ମୁଁ ଜଣେ ସରକାରୀ କର୍ମଚାରୀ—ଏ ଅଞ୍ଚଳର ବି. ଡ଼ି. ଓ. । ମୋ ନାଁ ଅମର ଦାସ । ଗାଁ ବସ୍ତିରେ ବୁଲି, ତାର ଉନ୍ନତ କରିବା ହେଉଛି ମୋର କାମ । ଆଚ୍ଛା ଅମୀନା, ତୁମ ଘରେ କଣ ପର୍ଦ୍ଦାର ପ୍ରଚଳନ ନାହିଁ ?

ଅମୀନା—ମୋ ବାବା ମତେ ପର୍ଦ୍ଦାରେ ରହିବାକୁ ମନା କରନ୍ତି । ମୋର ବର୍ତ୍ତମାନ ଶିଖିବାର ବୟସ—ବାହାରେ ବୁଲିଲେ କେତେ କଥା ଶିଖି ପାରିବି । ହେଲେ ବାବୁ, ଆମ ବସ୍ତିର ଲୋକେ ଏ କଥାକୁ ମୋଟେ ପସନ୍ଦ କରନ୍ତିନି ।

ଅମର—ନା-ନା, ବସ୍ତିର ଲୋକମାନଙ୍କୁ ବୁଝାଇଦେବାକୁ ହେବ—ଏ ଅନ୍ୟାୟ ! ଆଜିକାଲି ସ୍ତ୍ରୀମାନେ କେତେ ଆଗେଇଗଲେଣି । ଆମେ ନ ଆଗେଇଲେ ସେ ପଛରେ ପଡ଼ିଯିବା ! ସେ ପୁର୍ବର କଥା କଣ ଆଉ ଅଛି ?

ଅମୀନା—ବାବୁ ! ଆପଣ ତ ଜଣେ ଖୁବ ଭଲ ! ବାବା ଆପଣଙ୍କୁ ଦେଖିଲେ ଖୁବ ଖୁସି ହେବେ ।

ଅମର—ତୁମର ବାବା କାହାନ୍ତି ?

ଅମୀନା—ଦୋକାନକୁ ଯାଇଚନ୍ତି ସଉଦା ଆଣିବାକୁ ।

ଅମର – ଆସିବା ତାଙ୍କର ଡେରି ହେବ । ରାତି ହୋଇଗଲାଣି – ମୁଁ ଆଜି ଯାଉଛି—ପରେ ଆଉ ଆସିବି ।

ଅମୀନା—ଆସିବେ ?

ଅମର—ନିଶ୍ଚୟ ଆସିବି । ତୁମର ଏ ସରଳ ବ୍ୟବହାର ମତେ ଖୁବ୍ ମୁଗ୍‌ଧ କରିଛି । ନିଶ୍ଚୟ ଆସି ତୁମ ବାବାଙ୍କୁ ଦେଖାକରିବି ।

ଅମୀନା—ବାବୁ !

ଅମର—କୁହ···

ଅମୀନା—ମୋ ଜଗନ୍ନାଥଙ୍କୁ ଦେଖି ଯିବେନ ?

ଅମର—ଜଗନ୍ନାଥଙ୍କୁ ? ଆଚ୍ଛା ଆଚ୍ଛା, ଚାଲ···

(ଦୁହେଁ ଆଗେଇଗଲେ ଘରଆଡ଼କୁ)

## ସପ୍ତମ ଦୃଶ୍ୟ

[ଘନେଶ ବାବୁଙ୍କ ଘରର ଅଗଣା । ନିତ୍ୟାନନ୍ଦ ଛପି ଛପି ଆସି ସ୍ୱରଅଡ଼କୁ ଯୁହିଁଛି । ବାହାରେ ମଟର ହର୍ଣ୍ଣର ଶବ୍ଦ । ଅରୁଣା ସାନ୍ଧ୍ୟଭ୍ରମଣ ସାରି ଫେରିଛି ।]

ଅରୁଣା—ହ୍ୟାଲୋ...ନିତ୍ୟାନନ୍ଦ ବାବୁ ! ଏଠି କଣ କରୁଛନ୍ତି ?

ନିତ୍ୟାନନ୍ଦ—ତୁମର ଇନ୍ତଜାର୍‌ରେ ଅଛୁ ।

ଅରୁଣା – ମୋର ଇନ୍ତଜାର୍‌ରେ ଅଛନ୍ତି ? ଇଡିଅଟ୍...

ନିତ୍ୟାନନ୍ଦ—ତୁମେ ରାଗି ଯାଉଛ କି ଡାର୍ଲିଂ ? ତୁମେ ଯଦି ରାଗିବ ମୁଁ ହେବି କାହାର ?

ଅରୁଣା—ଅଚ୍ଛା ନିତ୍ୟାନନ୍ଦ ବାବୁ ! ବାରମ୍ବାର ଆସି ଆପଣ ମତେ ଏମିତି ବିରକ୍ତ କରୁଛନ୍ତି କାହିଁକି ?

ନିତ୍ୟାନନ୍ଦ—ଏ ପ୍ରଶ୍ନର ଆନସର୍‌ଟା (answer) ମୋଠୁ ଆଶା ନକରି ମୋ ଫାଦର୍‌ଙ୍କଠୁ ଆଶାକଲେ ଭଲହୁଅନ୍ତା । ଅଗ୍ରୁ ଡାର୍ଲିଂ, ମୁଁ ଯଦି ବୁଢ଼େ ଏ ପ୍ରଶ୍ନ ବୁଢ଼ାକୁ ମତେ ପଚାର ତୁମେ ମୋ ପ୍ରତି ଇନ୍‌ଜଷ୍ଟିସ୍ (injustice) କରୁଛ ବୋଲି ?

ଅରୁଣା—କଣ ଯେ ଆପଣ କୁହନ୍ତି ? ମୋ ପାଖରେ ଆପଣଙ୍କର କଣ ଦରକାର ?

ନିତ୍ୟାନନ୍ଦ—ଡାର୍ଲିଂ ! ତୁମ ସହିତ ମୋର ଯେଉଁ ସମ୍ପର୍କ ହେବାକୁ ଯାଉଛି —ସେଥିରେ ତୁମେ ହର୍ଦମ ବାହାରେ ବୁଲି ଅନ୍ୟମାନଙ୍କ ସହିତ ଫ୍ରେଣ୍ଡସିପ୍ କରିବାଟା କଣ ଉଚିତ ହେଉଛି ?

ଅରୁଣା—ଆପଣ ଏସବୁ କଣ କହୁଛନ୍ତି ? ଅରୁଣା କଣ ଜେଲ୍‌ଖାନାର ବନ୍ଦୀ ? ମୋର ସ୍ୱାଧୀନତା ଉପରେ ହସ୍ତକ୍ଷେପ କରିବାକୁ ଆପଣ କିଏ ?

ନିତ୍ୟାନନ୍ଦ – ଆରେ—ତୁମେ ଏକ୍‌ଦମ୍ ରାଗିଯାଉଛ ଯେ ? କାଲିକି ଭବିଷ୍ୟତରେ ତୁମର ଅପମାନ ଉଚ୍ଚାରଣ ମୁଁ ଥିଙ୍କ୍ (think) କରିପାରୁନି ! ଯଦି

କୌଣସି ରକେଟ୍‌ରେ ତୁମ ସହିତ ମୁଁ ଆକାଶ ମଣ୍ଡଳଟା ଘୂରି ଆସିପାରନ୍ତି···

ଅରୁଣା—ଆପଣଙ୍କ ମୁଣ୍ଡ କଣ ଗୋଳମାଳ ହୋଇଯାଇଚି ?

ନିତ୍ୟାନନ୍ଦ—ହଉ ନହେଲା – ସେଠ କୌଣସି ସିନେମା ଛବିରେ ଆମେ ଦୁହେଁ ହିରୋ ହିରୋଇନ୍ ହୋଇପାରନ୍ତେ···

ଅରୁଣା—ନନସେନ୍‌ସ !

ନିତ୍ୟାନନ୍ଦ—ମତେ ଯାହା ପାଉଚ କୁହ—ହେଲେ ନିର୍ଦ୍ଦୟ ହୁଅନି । ମୁଁ ଆଉ କେତେ ଦିନ ଏମିତି ଓ୍ୱାନ୍ ୱେ ଟ୍ରାଫିକ୍ (one-way traffic) ଭଳି ରହିବ ? ତୁମେ କଣ ବୁଝି ପାରୁନାହିଁ ମୋ ଅନ୍ତରର ବେଦନା ?

ଅରୁଣା—ନା—ମୁଁ କିଛି ବୁଝିପାରୁନି । ଆପଣ ଏଠୁ ଗଲେ !

ନିତ୍ୟାନନ୍ଦ—ଏକା—ଏକା ?

ଅରୁଣା—ହଁ···

ନିତ୍ୟାନନ୍ଦ—ମୁଁ କଣ ନନ୍ଦଅଳକ, ହିନ୍ଦ୍ ସିନେମାରେ 'ପ୍ୟାର୍‌କିୟା ତୋ ଡର୍‌ନା କ୍ୟା' ଆର୍ଡ଼ହିଟ୍ ଟଚ୍ କଲଣି । ତୁମେ ଆଉ ମୁଁ ଯଦି ଯାଅନ୍ତେ···

ଅରୁଣା—ଲୋକ ବେକାର ହେଲେ ଏଭଳି ସବୁ ଅଦ୍ଭୁତ କଳ୍ପନା ତା ମୁଣ୍ଡ ଭିତରକୁ ଆସେ । ବାପାଙ୍କର ସରକାରୀ ସୁଯୋଗ ନେଇ ଆପଣ ସେତିକି ବାଟ ଅଗେଇ ଆସିଚନ୍ତି ସେତିକରେ ବନ୍ଦକରନ୍ତୁ । ଆଉ ଆଗକୁ ଗଲେ ବିପଦ । ଟଙ୍କା ଦରକାର ? କେତେ ଦରକାର କୁହନ୍ତୁ— ଏଇ ମୁହୂର୍ତ୍ତରେ ମୁଁ ଦେଉଚି । ହେଲେ ମୋର ସ୍ୱାଧୀନତା ଉପରେ ହସ୍ତକ୍ଷେପ କରନ୍ତୁ ନାହିଁ ।

ନିତ୍ୟାନନ୍ଦ—ମୋ ବାପା ମତେ କହୁଥିଲେ, ତୁମ ସହିତ ମୋ ବାହାଘର ପ୍ରସ୍ତାବ ଏବାବେଳକେ ପକ୍‌କା ହୋଇଯାଇଛି । କିନ୍ତୁ ତୁମର ଏ ଯେଉଁ ରୁକ୍ଷ ବ୍ୟବହାର—ତୁମ ସହିତ ସାରା ଜୀବନଟା ଚଳିବା ତ ମୁସ୍କିଲ୍ !

ଅରୁଣା—ଦେଖ, ଆପଣ ଅନ୍ୟ ସଙ୍ଗ ବାଛି ନିଅନ୍ତୁ । ବାରମ୍ବାର ଏଠିକି ଆସି ମତେ ଆଉ ବିରକ୍ତ କରନ୍ତୁ ନାହିଁ । ମୋ ବାହାଘର ଠିକ୍

ଭରିବାକୁ ଆପଣଙ୍କ ବାପାଙ୍କର କ ଅଧିକାର ଅଛି ?

ନିତ୍ୟାନନ୍ଦ—ସେ କଥା ବୁଝିବା ବାପାଙ୍କ ପକ୍ଷରେ—ବାପାଙ୍କ କଥା ମୁଁ ପାଳନ କରୁଛି—ମୋର ଏଥିରେ ଲାଭ ନାହିଁ କି କ୍ଷତି ନାହିଁ ।

ଅରୁଣା—ବ୍ୟବସାୟରେ ଲୋକ ଲାଭକ୍ଷତିର ହିସାବ କରେ । ଆପଣମାନେ—

ନିତ୍ୟାନନ୍ଦ—ବନ୍ଧୁବଚନରେ କହୁଚ ଭାବିକି—କହିପାର ମୋ ବାପା...ଙ୍କ ତାଙ୍କ ପକ୍ଷରେ ଏ ତ ଏକ ବ୍ୟବସାୟ । ଆଚ୍ଛା, ଏସବୁ ଅଡୁଆ କଥା ବୁଝିବା ମତେ ନ ପଡ଼ୁ ମୋ ବାପାଙ୍କ ପକ୍ଷରେ ନାହିଁ ?

ଅରୁଣା—ସୁଯୋଗ ଆସିଲେ ପଡ଼ୁଛନ୍ତି ନିତ୍ୟାନନ୍ଦ ବାବୁ ! ଆପଣଙ୍କ ବାପା ଆପଣଙ୍କୁ ଟଙ୍କା ପଇସା ନଦେଇ ବଡ଼ ଅନ୍ୟାୟ କରୁଚନ୍ତି । ଆପଣ ତ ତାଙ୍କର ଗୋଟିଏ ମାତ୍ର ପୁଅ !

ନିତ୍ୟାନନ୍ଦ—ଏତେବେଳେ ଯାଇ କଥାଭଳି କଥାଟିଏ କହିଲ ! ବାପାଙ୍କର କିଛିବି ଜ୍ଞାନ ମୋଟେ ନାହିଁ ।

ଅରୁଣା—ଆପଣଙ୍କ ପକେଟ ଖର୍ଚ୍ଚ ପାଇଁ ମାସକୁ ଅନ୍ତତଃ ଦୁଇଶହ ଟଙ୍କା...

ନିତ୍ୟାନନ୍ଦ—ଦେଢଶ ହେଲେ ଚଳିବ ।

ଅରୁଣା—(ଭେନିଟି ବ୍ୟାଗ୍‌ରୁ ଟଙ୍କା କାଢ଼ି) ନିଅନ୍ତୁ—ଦୁଇଶହ ଟଙ୍କା ଅଛି ।

ନିତ୍ୟାନନ୍ଦ—ଟଙ୍କା ?

ଅରୁଣା—ନିଅନ୍ତୁନା—ଆପଣଙ୍କର ଟଙ୍କା ଦରକାର। ମୋର ପ୍ରଚୁର ଅଛି ।

ନିତ୍ୟାନନ୍ଦ—ନହେଲେ ତୁମେ କଣ ଭାବିବ ? (ନେଇ ଓ ରସିଦ ଲେଖିଲା)

ଅରୁଣା—ଏ କଣ ହେଉଛି ?

ନିତ୍ୟାନନ୍ଦ—ଏ.... ଓ୍ୱେ ହ୍... ଦରକାର ହେଲେ କାମରେ ଆସିବ । (ରସିଦ ଦେଲା)

ଅରୁଣା—ଦେଖନ୍ତୁ ନିତ୍ୟାନନ୍ଦ ବାବୁ—ମୋ ବିଷୟରେ ଆପଣ ଆଉ ମୁଣ୍ଡ ଖେଳେଇବେନି । ଏବେ ଯାଆନ୍ତୁ—ସେକେଣ୍ଡ୍ ଶୋ'ର ଟାଇମ୍ ଅଛି ।

ନିତ୍ୟାନନ୍ଦ—ମୁଁ...ଏକା ଏକା ?

ଅରୁଣା—ଯାଆନ୍ତୁନା...

ନିତ୍ୟାନନ୍ଦ—(ଯାଉ ଯାଉ) ଡାର୍ଲିଂ ! (ପ୍ରସ୍ଥାନ)

( ଅରୁଣା ଠିଆହୋଇ ଭଳି ଯେମିତି ଚିନ୍ତା କରୁଥିଲା । ପଛକୁ ଧରଣୀ ଦାସ । ଖୁବ୍ ବ୍ୟାକୁଳତାରେ ଡାକିଲେ—)

ଧରଣୀ—ଅରୁଣା ! ଅରୁଣା !

ଅରୁଣା—କିଏ—ଧରଣୀ ମହୋଦୟ ! ହଁ, ଆପଣଙ୍କର କଣ କହିବାର ଅଛି କହନ୍ତୁ—!

ଧରଣୀ—ଆଉ ଡେରି ନାହିଁ ଅରୁଣା—ଏବେ ନିତ୍ୟାନନ୍ଦଙ୍କୁ ବିବାହ କରି-ବାର ବେଳ ଆସିଗଲା ।

ଅରୁଣା—ବିବାହ !

ଧରଣୀ—ଚମକିପଡ଼ୁଚ ଯେ ? ସର୍ତ୍ତକଥା କଣ ମନେନାହିଁ ?

ଅରୁଣା—ସର୍ତ୍ତ...

ଧରଣୀ—ହଁ ...ସର୍ତ୍ତ—ତୋର କଣ ମନେ ନାହିଁ ? ତୁ ଗୋଟାଏ ନାଚବାଲୀ—ସ୍ଥାନ ତୋର ସମ୍ରାଟ ଭଳିରେ । ଯୋଉ ସର୍ତ୍ତରେ ତୁ ଅଙ୍କ ଲକ୍ଷପତିର ଝିଅ ହବାର ସମ୍ମାନ ପାଇଚୁ ସେ ସର୍ତ୍ତକୁ ତୁ ଯଦି ପାଳନ ନକରୁ...

ଅରୁଣା—ଓଃ—ବନ୍ଦକରନ୍ତୁ ସେ ସବୁ ପୁରୁଣାକଥା ! ମୋର ସ୍ୱାଧୀନ ଇଚ୍ଛା ଉପରେ ଏମିତି ହସ୍ତକ୍ଷେପ କରିବାକୁ ଆପଣ କିଏ ? କହିପାରିବେ ଆପଣଙ୍କ ପାଖରେ ମୁଁ କ ଦୋଷ କରିଥିଲି ?

ଧରଣୀ—ବକ୍ତୃତା ଦେବାର ବେଳ ଏ ନୁହେଁ ଅରୁଣା ! ମୋର ସେଇ ଗୋଟିଏ ସର୍ତ୍ତ—ନିତ୍ୟାନନ୍ଦଙ୍କୁ ତୁ ବିବାହ କରିବୁ—ତା ନହେଲେ ତୋର ସବୁ ସ୍ୱପ୍ନକୁ ମୁଁ ଧୂଳିସାତ୍ କରିଦେବି ।

ଅରୁଣା—ମନେରଖନ୍ତୁ ଧରଣୀବାବୁ—ଆପଣ ହରିହରଚନ୍ଦ୍ର ମୋ ବାପାଙ୍କର ଜଣେ ବେତନଭୋଗୀ କର୍ମଚାରୀ !

ଧରଣୀ—ଚମତ୍କାର ! ଏଇ ଦିନ କେତୋଟା ଭିତରେ ତୁ ତ ନିଜକୁ ବେଶ୍ ଚିହ୍ନେଇ ପାରିଚୁ । ଏ ରାଜମହଲର ପାଣି ପବନ ଖାଇ ନିଜକୁ ତୁ ମନେକରିଚୁ ରାଜକୁମାରୀ—ନା ? ବାପା—କିଏ ତୋର ବାପା ?

ଅରୁଣା—ଆପଣଙ୍କର ଭଙ୍ଗ ବୁକଉପର ଭପ୍ନ କାହିଁ ଧରଣୀ ବାବୁ ? ଆପଣ ଭୁଲଯାଉଛନ୍ତି—ମୁଁ ତ ହେଉଛି ଲକ୍ଷପତି ଗଣେଶ ବାବୁଙ୍କ ଝିଅ—ଆଉ ଆପଣ ମୋ ବାପାଙ୍କର ଜଣେ କର୍ମଚାରୀ । ମୁଁ ଚାହିଁଲେ ଆପଣ ଏଇ ମୁହୂର୍ତ୍ତରେ ଚାକିରୀରୁ ବରଖାସ୍ତ ହେବେ ।

ଧରଣୀ—(ହସି) ଚମତ୍କାର ଅଭିନୟ ! ମୋ ଆଖିରେ ଧୂଳିଦେଇ କେହି କେବେ ବର୍ତ୍ତି ଯାଇନ । ମୁଁ ଜାଣେ, ଗଣେଶ ବାବୁ ଚାହେଁ ଅମର ସହିତ ବିବାହ ଦେବାକୁ ଚାହାନ୍ତି— ହେଲେ···

ଅରୁଣା—ବନ୍ଦ କରନ୍ତୁ ! ଏମିତି ବ୍ୟକ୍ତିଗତ କଥା ନେଇ ଆପଣଙ୍କର ମୁଣ୍ଡ ଖେଳେଇବାର କଣ ଅଛି ?

ଧରଣୀ—ମୋର ଅଛି ଅଧିକାରରେ ନ୍ତୁ ଅମରଙ୍କୁ ବିବାହ କରନ୍ତୁ ?

ଅରୁଣା—ଯଦି କଣ ? ଧିକ୍‌ପଢ଼ନ୍ତୁ ଯେ ମୁଁ ଅମରବାବୁଙ୍କ ବାଗ୍‌ଦତ୍ତା !

ଧରଣୀ—(ହସି) ବାଗ୍‌ଦତ୍ତା ? ଅଚ୍ଛା ଦେଖାଯାଉ—ଏ ଖେଳରେ ହେବ କାହାର ଜିତାପଟ !

( ଧରଣୀର ପ୍ରସ୍ଥାନ—ଅରୁଣା ଅସ୍ୱସ୍ତି ବୋଧକରୁଥିଲ ।)

## ଅଷ୍ଟମ ଦୃଶ୍ୟ—

[ ନଦୀକୂଳ—ଆକାଶରେ ତ୍ରୟୋଦଶୀର ଚନ୍ଦ୍ର । ଅମୀନା ବସିଛି ଆକାଶର ଚନ୍ଦ୍ରକୁ ଚାହିଁ । ଅମର ଚୁପି ଚୁପି ଆସି ଅମୀନାର ଆଖି ଦୁଇଟି ବୁଜାଧରଛି । ]

ଅମୀନା—ଛାଡ଼ନା ! ମୁଁ ଜାଣିପାରିଛି··· (ଅମର ଛାଡ଼ିଦେଇଛି) , ତୁମେ ବଡ଼ ଦୁଷ୍ଟ !

ଅମର—ଦୁଷ୍ଟ...କି ? ଏମିତିକା ଝଙ୍କୃତିଆ ସତ—ନଇକୂଳ—ଆକାଶରେ ଚନ୍ଦ୍ରୋଦୟର ଦୃଶ୍ୟ, ଆଉ ପାଖରେ ତୁମେ—ଏତେ ଐଶ୍ୱର୍ଯ୍ୟ ଭିତରେ ଦୁଷ୍ଟ ହେଉଥିବା ସ୍ୱାଭାବିକ ।

ଅମୀନା—ଏତେ ପାଠ ପଢ଼ିଚ ହେଲେ ତୁମେ ଖୁବ୍...

ଅମର—ଦୁର୍ବଳ ? ଏଇଆ ତ ? ଜାଣିନି କେଜାଣି ତୁମ ପାଖରେ ଥିଲେ ମୁଁ ଖୁବ୍ ଦୁର୍ବଳ ହେଇଯାଏ । ତୁମର ସରଳ ବ୍ୟବହାର ମତେ ପାଗଳ କରିଦିଏ । ସବୁବେଳେ ଅମୀନା—ଅନ୍ଧାର ଦୁନିଆରେ ତୁମଭଳି ନିଷ୍ପାପ ଝିଅଟିଏ ଖୋଜି ପାଇବା ସମ୍ଭବ ନୁହେଁ ।

ଅମୀନା—ଆଉ ବାବୁ ! ତୁମକୁ ମୁଁ ସତ୍ୟ ମନାକରୁଛି—ମତେ ଏତେ ପ୍ରଶଂସା କରନ୍ତୁନି । ଶ୍ରେଷ୍ଠ ଘରବାରରେ ମୋର ଜନ୍ମ...

ଅମର—ଜନ୍ମ ସୂତ୍ରରେ ତ ତୁମେ ଶ୍ରେଷ୍ଠ ନୁହଁ ? ଅଚ୍ଛା ଅମୀନା, ତୁମେ ସବୁବେଳେ ନିଜକୁ ଏତେ ଶ୍ରେଷ୍ଠ ବୋଲି ଭାବ କାହିଁକି—ମୁଁ ବୁଝିପାରେନା ! ଏ ଯୁଗରେ ଜାତି ଆଉ ଧର୍ମର ପାର୍ଥକ୍ୟ କଣ ପାଇଁ ? ବଡ଼ ଆଉ ସାନର ପ୍ରଭେଦ କି ମଣିଷର ତିଆରି !

ଅମୀନା—ମୋ ବାପୁ ବି ଠିକ୍ ଏଇକଥା କୁହନ୍ତି । ହେଲେ ବାବୁ—

ଅମର—ନା ନା ଅମୀନା—ତୁମେ ଅତି ବଡ଼—ଅତି ମହାନ୍ । ତୁମକୁ ଦେଖିଲେ ମୋର ମନେହୁଏ ତୁମେ ଯେମିତି ମୋର ଅତି ଆପଣାର ।

ଅମୀନା—ବାବୁ ! ମୋ ପ୍ରତି ସତରେ ତୁମର ଏତେ ମମତା ?

ଅମର—ଅମୀନା—ଏଇ ମମତା କେବେ କାହାରିକୁ ଅପେକ୍ଷା ରଖେନା । ଏଇ ମମତା ପାଖରେ ଥାଏନା ଜାତିଧର୍ମର ବିଚାର—ଥାଏନା ଉଚ୍ଚ ନୀଚର ଭେଦାଭେଦ । ଏଇ ମମତା ପାଖରେ ଥାଏ କେବଳ ଗୋଟିଏ ଆକର୍ଷଣ । ତା କଣ ଜାଣ—ପ୍ରେମ !

ଅମୀନା—ପ୍ରେମ...?

ଅମର—ହଁ ଅମୀନା ! ପ୍ରେମ ଅନ୍ଧ । ଭଗ୍ନହୃଦୟ ମେଘବର୍ତ୍ତୀ ନାଶ୍ୱର ପ୍ରେମରେ ତ ପୁଣି ସତ୍ତେ ଇନ୍ଦ୍ରିୟଙ୍କୁ ସ୍ୱେଚ୍ଛାର !

ଷ୍ଟାଫୋର୍ଡ଼୍ ଜିମ୍ସଙ୍କ କନ୍ୟା ତ ପୁଣି ବଦାନ୍ୟ ନରେ କୃତ୍ତଜାପ୍ତ ନମ୍ରୋ ୟୁଙ୍କଙ୍କୁ !

ଅମୀନା—ବାବୁ—ଏସବୁ ମୁଁ କିଛି ବୁଝେନା । ମୋ ପାଖରେ ଏମିତ କି ଆକର୍ଷଣ ଅଛି, ଯାହାକି ତମକୁ ବାନ୍ଧିରଖିପାରିବ ?

ଅମର—ତୁମର ଜାଣିବା ପରଠାରେ ତୁମେ ତ ମତେ ବାନ୍ଧି ରଖିସାରିଚ ! ତୁମର ଏଇ ଗୋଲାପ ଫୁଲ ଭଳି ମୁହଁଟି—ମୁଁ କେବେକେବେ ହେଲେ ଭୁଲିପାରୁନି ।

ଅମୀନା—ବାବୁ ! ତୁମର ଅମ ପ୍ରତି କେତେ ଦୟା !

ଅମର—ଦୟା ? ଦୟା କଣ ସ୍ନେହକୁଇ କୁହାଯାଏ ? ମୁଁ ତୁମ ପାଇଁ କଣ ଏମିତ କରିଛି ଯେ…

ଅମୀନା—ଅଉ ଅନେକ କଣ କରନ୍ତି ବାବୁ ! ବାପୁ ବେମାର ଥିଲବେଳେ ତୁମେ କେତେ ସାହାଯ୍ୟ କରିଚ । ମୁଁ କେମିତ ଟିକିଏ ପାଠ ପଢ଼ିବ ସେଥିପାଇଁ ତୁମର କେତେ ଚେଷ୍ଟା !

ଅମର—ନା ନା—ସେ କିଛି ନୁହେଁ । ମୁଁ ଖାଲି ସବୁବେଳେ ଭାବୁଚି—ମୁଁ ଯଦି ତୁମକୁ ସୁଖୀ କରିପାରନ୍ତି ଅମୀନା…

ଅମୀନା—ବାବୁ !

ଅମର—(ଅମୀନାକୁ ଧରି) ହଁ ଅମୀନା—ଏମିତ ଜନ୍ମଜନ୍ମାନ୍ତରେ ମୋର ଗୃହରେ ମୁହଁ ନୁଆଁଇ ତୁମେ କୁହନ୍ତ ତୁମ ବାଗବୁଲା ଜୀବନର କାହାଣୀ । ଅଜାଣତରେ ଛୋଟ ପକ୍ଷୀଟି ଭଳି କୋଣରେ ତୁମର ଜାଗିଉଠନ୍ତା କମ୍ପନ । ବାହୁ ଦୁଇଟିରେ ମୋର କଣ୍ଠକୁ ଜଡ଼ିଧରି କହନ୍ତ କେତେ ଅସରନ୍ତି ଗପ—

ସମସେର୍—(ପ୍ରବେଶ କରି ଗର୍ଜିଉଠିଲା) ଅମୀନା !

(ଅମୀନା ଓ ଅମର ପରସ୍ପରଠାରୁ ଦୂରେଇଗଲେ)

ଅମୀନା—ବାପୁ !

ସମସେର୍—ବାପୁ ? କିଏ ତୋର ବାପୁ ? ବେସରମ୍ ଲଡ଼୍କୀ—ମୁହଁରୁ ଭଣ କଲୁ ?

ଅମୀନା—ବାପୁ ! (ସମସେର୍ ପାଖକୁ ଆସିଣ)

ସମ୍‌ସେର୍—(ମାରନ୍ତି) ବାପ୍ ବେଟୀ ସବ୍ ଝୁଟା—ନିକଲ୍ ଯାଓ ଦୁନିଆସେ !

ଅମୀନା—ନାହିଁ ବାପୁ ! (କାନ୍ଦିଲା)

ସମ୍‌ସେର୍—ନା ନା, ସମସେର୍ ଆଜି କିଛି ଶୁଣିବନି । ତାର ଏ ଦୁନିଆରେ କେହି ନାହିଁ ! ବାବୁ, ତୁମକୁ ମୁଁ ବହୁତ ବିଶ୍ୱାସ କରିଥିଲି, କିନ୍ତୁ ତୁମେ ଏ କଣ କଲ ? ବିଶ୍ୱାସରେ ତୁମେ ଜହର୍ ଦେଇଦେଲ ?

ଅମର—ସମ୍‌ସେର୍ ମହୁଆ !

ସମସେର୍—ବସ୍ତିକି ଯାଅ—ଶୁଣି ଆସିବ । ଭଦ୍ରଘରର ପିଲା ତୁମେ—ସମ୍‌ସେର୍ ଭଳି ଗୋଟାଏ ଫକିର ଆଦ୍‌ମୀର ସରଳତାର ସୁଯୋଗ ନେଇ ତୁମେ ଏତେ ବାଟ ଆଗେଇଗଲ ?

ଅମର—ମତେ ଭୁଲ୍ ବୁଝିବନି ସମସେର୍ ମହୁଆ !

ସମ୍‌ସେର୍—ଆଜି ବାବୁ ଆଜି—ବସ୍ତିରୁ ଯାହା ଶୁଣି ଆସିଥିଲି ଆଜି ନିଜ ଆଖିରେ ଦେଖିଲି । ଅମୀନା ! ତୋର ପାଇଁ ବସ୍ତିଟା ବଦ୍‌ନାମ୍ ହେଇଗଲା ! ଏପରି କରିବା ଆଗରୁ ଜହର ଟିକେ ପିଇ ଦେଇ ପାରିଲୁନି ?

ଅମୀନା—ମୋର ଦୋଷ ହେଇଛି ବାପୁ—ମତେ ମାଫ୍ କର !

ସମ୍‌ସେର୍—ମାଫ୍ କରିବ ? ଯା ତୁ ··· ଅନ୍ଦର୍ ଯା (ଠେଲି) । ଯାଦ୍ ରଖ୍, ଆଜିଠୁ ତୋର ବାହାରକୁ ଯିବା ବନ୍ଦ । ମୁଁ ଦେଖିନିଏ ଏ ସରକାରୀ ବାବୁର ହାତରେ କେତେ ତାକତ୍ ଅଛି ! ଯା—(ଅମୀନା ଚାଲିଗଲା) ଅମର ବାବୁ, ଏ ତୁମେ କଣ କଲ ? ବଡ଼ ଚାକିରି କରିଛ, ବହୁତ ଲୋକଙ୍କର ଜାନ୍ ବଞ୍ଚାଇଛ—କେବେ ଆଜି ଏଇ ଫକୀରର ଲଡ଼କୀକୁ ଏମିତି ଭାବରେ ଜାହାନ୍ନାମ୍‌କୁ ଠେଲିଦେଲ କାହିଁକି ?

ଅମର—ମୋର ଦୋଷ ହେଇଛି ସମସେର୍ ମହୁଆ—ମତେ କ୍ଷମା ଦିଅ !

ସମସେର୍—କେଉଁ—ମୁଁ ଲୁଣ୍ଠା, ବଦମାସ୍, ପାଜି, ସଇତାନ—ଜଗତରେ ବନ୍ଧୁଙ୍କ ଖୁନ୍ କରେ । କ୍ଷମା କଣ ମୁଁ ଜାଣେନା । କସୁର ହେଲେ ଦଣ୍ଡ ପାଇବାକୁ ହବ—ସେ ଖୋଦାର ହୁକୁମ ।

ଅମର—ବେଶ୍—ମତେ ଦଣ୍ଡ ଦିଅ ସମସେର୍ ମହାଶୟ—ମୁଁ ଦଣ୍ଡ ନେବାକୁ ପ୍ରସ୍ତୁତ ।

ସମସେର୍—ହଁ ଦଣ୍ଡଦେବ—ମୁଁ ତୁମକୁ ଆଜି ଖୁନ୍ କରିବ—ତୁମର ସେଇ ଖୁନ୍‌ରେ ତୁମ ପାପର ପ୍ରାୟଶ୍ଚିତ୍ତ ହେବ । ଆଉ ତୁମ ପତ୍ନୀ ଅମୀନାକୁ ମଧ୍ୟ ଖୁନ୍ କରିବ—ଆଉ ଜଣେ ଖୁନ୍‌ହୋଇ ମରିବ ।

ଅମର—ନା-ନା ସେକଥା କୁହନା—ଅମୀନା ଭଲ ହିଁ ଏ ମରିପାରେନା ।

ସମସେର୍—ଖାମୋସ୍ ! ସ୍ୱା ଛଡ଼ା ଆଉ କୋଉ ରାସ୍ତା ଅଛି କୁହନା ? ଯୋଉଁ ଲୁଅଁ ସ୍ମା ଲଡ଼୍‌ଙ୍କର ଜୀବନକୁ ନଷ୍ଟ କରିପାରିବା ପରେ ଆଉ କି ଦାଣ୍ଡ ତୁମେ ତା ପାଇଁ ରଖିଛ ? ତୁମେ ଜଣେ ବଡ଼ ଅଫିସର । ତୁମର ଅମୀନା ସହିତ ମିଳାମିଶାକୁ ମୁଁ ବୁଝି ପାରୁଛି ନ ଥିଲି । ହେଲେ ତୁମେ ମୋ ଖୋପରେ ହାତ ଢାଳିଦେଲ ?

ଅମର—ସମସେର୍ ମହାଶୟ ! ସେଥିପାଇଁ ମୁଁ ପ୍ରାୟଶ୍ଚିତ୍ତ କରିବାକୁ ପ୍ରସ୍ତୁତ !

ସମସେର୍—ପ୍ରାୟଶ୍ଚିତ୍ତ କରିବ ? ଅମୀନାକୁ ସାଦି କରିପାରିବ ?

ଅମର—ସାଦି ?

ସମସେର୍—ହଁ ସାଦି ! ସେ ସାହସ ଅଛି ନାହିଁ କେବେ ଏତେ ବାଟ ଅଗ୍ରସର ହେଲ କାହିଁକି ? କୁହ, ଜବାବ୍ ଦିଅ ! ଅମୀନାକୁ ସାଦିକରି ତୁମ ସମାଜରେ ତାକୁ ଚଳେଇ ପାରିବ ? ତା ଯଦି ତୁମେ ନ ପାରିବ, ଯାଦ୍ ରଖ, ତୁମକୁ ମୁଁ ବଞ୍ଚିବାକୁ ଦେବିନି ।

ଅମର—ମତେ କହିବାକୁ ଦିଅ ସମସେର୍ ମହାଶୟ ! ତୁମେ ଏମିତି ଅଧୀର ହେଲେ···

ସମସେର୍—ସମସେର୍ ତୁମଠୁ ଚାହେଁ ଠେକ୍‌ଠୋକ୍ ଜବାବ୍ । ଗୁଡ଼ାଏ ଖୁବ୍ କହିଲ୍—ହେଲେ ବଖତ୍‌ବେଳେ ଏ ଗୁଡ଼ାକ ପଥରଠୁ ବି ଅଧିକ ଶକ୍ତ

ହୋଇଯାଏ । ସ୍ୱାର ଫଇସଲ ଆଜ ତୁମକୁ କରିବାକୁ ହେବ ।

ବୃଦ୍ଧ—ଅମିନାକୁ ତୁମେ ସାଦି କରିପାରିବ ?

ଅମର—କାହିଁକି ନ ପାରିବି ? ଆଜ ପରା ସମସ୍ତ ପୃଥିବୀର ନେତୃବୃନ୍ଦ ଏ ସାରା ପୃଥିବୀକୁ ଗୋଟିଏ ପରିବାରରେ ପରିଣତ କରିବାକୁ ଚେଷ୍ଟାକରି

ସ୍ୱବଛନ୍ତ—ମୁଁ କାହିଁକି ପାରିବିନି ?

ସମସେର୍—ଏ ସାଦିରେ ତୁମ ସମାଜ କଣ ମଞ୍ଜୁର ଦେବ ? ସେ ସମାଜର ନିୟମ ତୁମଭଳି ଦୁର୍ବଳ ଲୋକ କରିନାହିଁ । ଶକ୍ତିସମ୍ପନ୍ନ ସେ ନିୟମକୁ ତୁମେ ଭାଙ୍ଗି ଦେଇ ପାରିବ ? ଏଇ ସମାଜବର୍ଗର ମଙ୍ଗଳ ପାଇଁ ହିନ୍ଦୁ ଆଉ ମୁସଲମାନମାନଙ୍କୁ ଏକ କରିଦେଇ ପାରିବ ?

ଅମର—ପାରିବି ! ମୁଁ ତୁମକୁ କଥା ଦେଉଛି ସମସେର୍ ମିଆଁ, ମୁଁ ଅମିନାକୁ ବିବାହ କରିବି ।

ସମସେର୍—ସାବାସ୍—ସାବାସ୍ ମେରେ ବେଟେ ! ସାବାସ୍—(କୁଣ୍ଢାଇ ଧରିଲା) ।

---

# ତୃତୀୟ ଅଙ୍କ

## ପ୍ରଥମ ଦୃଶ୍ୟ—

[ଘନେଶ ବାବୁଙ୍କ ବୈଠକଖାନା । ଅରୁଣାର ଜନ୍ମଦିନ—ନାଚ ଚାଲିଛି—ବନ୍ଧୁ ନିମନ୍ତ୍ରିତ ଅତିଥି ବସିଛନ୍ତି—ଅରୁଣା ଗୀତ ଗାଇ ନାଚୁଛି—ଅମର ଅସ୍ଥିର—ତେବେ ଘନେଶ ବାବୁଙ୍କ ମନରେ ହରଷ । ନାଚ ଶେଷରେ ଭଦ୍ରବ୍ୟକ୍ତିମାନେ ଚାଲିଗଲେ ନମସ୍କାର କରି—ରହିଗଲେ ଘନେଶବାବୁ, ଅରୁଣା ଓ ଧରଣୀ ।]

—ଗୀତ—

ଏ ନୀଳ ଗଗନରେ ଏ ତାରା ଚୁନା ଚୁନା
ମିଳନ ବଇଁଶୀ ବଜାଏ କିଏ—କିଏ ସେ ଅଜଣା ।
ବକୁଳ ଗନ୍ଧରେ ସ୍ୱପନ ଜୁଆର
ଖିଆଲି ମନରେ ମମତା ମଧୁର
ଚୁମି ଚୁମି ଯାଏ ସବୁଜ ବୁକୁରେ
ପାଇବ ଏ ତନୁ ମାଝରେ—ମନ ମୋ ମାନେ ନାହିଁ ମନା ।।
ବାଉଳା ପବନ ଚମକ ଲଗାଏ
ଅଜଣା ମନ୍ତ୍ରର ପୁଲକ ଜଗାଏ
ରହି ରହି ମୋର ମରମ ଭୂମରେ
ମିଳନ ଲଗନ ଦେଶରେ—ଜାଣେନା ପଥ ତ ଅଜଣା ।।

ଦୀନେଶ—ଅମର ଏଠାଏ ଆସିଲା ନାହିଁ—କି ଦାୟିତ୍ୱହୀନ ଦେଖୁଛ ଧରଣୀ ? ସିଏ ଅସଲ ଲୋକ ଯେ ଯଦି ନ ଆସେ ଏ ସବୁ ଆରେଞ୍ଜମେଣ୍ଟ (arrangement) କରିବାର କିଛି ମାନେ ହୁଏନା !

ଧରଣୀ—ଆପଣ ସିନା ସବୁବେଳେ ଅମର ଅମର ହେଉଛନ୍ତି—କିନ୍ତୁ ସେ ଅମରବାବୁଙ୍କି ଏତେ ସହଜ ଲୋକ ନୁହେଁ ସାର୍ !

ଦୀନେଶ—ନା, ନା, ଧରଣୀ ! ତୁମେ ଅମରକୁ ଆଜିଯାଏ ବି ଚିହ୍ନିଲନି । ସେ ସେଭଳିଆ ପିଲା ନୁହେଁ । ପରେ ଅମର ସେ ମୋର ନିଜର ପିଲା !

ଅରୁଣା—ବାପା !

ଦୀନେଶ—କଣ ମା ?

ଅରୁଣା—ଯେତେ ଅସୁବିଧା ଥାଉନା କାହିଁକି, ଅମର ବାବୁଙ୍କର ପ୍ରଥମେ ଏଠିକି ଆସିବା କଣ ଉଚିତ ନୁହେଁ ?

ଦୀନେଶ—ଉଚିତ ସେ ମା—କିନ୍ତୁ ପରକାର୍ଯ୍ୟ ବୃଦ୍ଧି କଲେ ନିଜର ସ୍ୱାଧୀନତା ବୁଲିଯାଏ । ଧରଣୀ, ତୁମେ ମୋର କାର୍ ନେଇ ଚାଲ—ଯେତେ ଡେରି ହେଉ ପଛକେ ଅମରକୁ ସାଥିରେ ନେଇ ଆସିବ—ଯାଅ ।

(ଧରଣୀ ଯାଉଥିଲେ—ଅମର ଦ୍ୱାରଦ୍ୱାର ଧରି ଅଟିଛି)

ଅମର—ମୋର ଟିକେ ଡେରି ହୋଇଗଲା ସାର୍—କ୍ଷମା କରିବେ । ଟୁର୍‌ରେ ଯାଇଥିଲି—ଫେରୁ ଫେରୁ ଡେରି ହୋଇଗଲା ।

ଦୀନେଶ—ନା, ନା, ଅମର ! ତୁମର ଏ ଡେରିରେ ଆମେମାନେ ସମସ୍ତେ ଦୁଃଖିତ ।

ଧରଣୀ—ମୁଁ ତ ଏବକା ଆପଣଙ୍କୁ ଆଣିବାକୁ ବାହାରିଯାଉଥିଲି !

ଅରୁଣା—ଆଜି ଟୁର୍‌ରେ ନ ଯାଇଥିଲେ କ'ଣ ଚଳିନଥାନ୍ତା ?

ଅମର—ଗୋଟାଏ ଗାଁରେ କଲେରା ଏପିଡେମିକ (epidemic)—ପାଞ୍ଚ ଜଣ ମଲେଣି । ହେଲ୍‌ଥ ଅଫିସରଙ୍କ ସାଙ୍ଗରେ ସେ ଗାଁକୁ ଯିବାକୁ ପଡ଼ିଲା ।

ଦୀନେଶ—କିନ୍ତୁ ଆଜି ହେଉଛି ଅରୁଣାର ଜନ୍ମଦିନ—ଏଇ ଖିଆଲ ତୁମର ଥିବା ଉଚିତ ଥିଲା । ଏ ସୁଦ୍ଧା ଦାୟିତ୍ୱହୀନତା ! ନା, ନା—ତୁମର ଖିଲାପ ପାଇଁ ତୁମକୁ କ୍ଷମା ଦିଆଯାଇପାରେନା ।

ଧରଣୀ—ମୋଟେ ନୁହେଁ ସାର୍ ! ସେ ଗୋଟେ କଥା—ଅରୁ ଦେଈଙ୍କ ଜନ୍ମଦିନରେ ଅମରବାବୁ ଆସିବେ ସାଢ଼ ନଅଟାରେ ? ଏଇଟା ମୋଟେ ଭଲକଥା ନୁହେଁ । ଏଇଥିରୁ କଣ ଜଣାପଡ଼ୁଛି······

ବଂଶୀ—(ଭିତରୁ ଆସି) ବାବୁ ! କାଙ୍ଗାଳୀ ଭୋଜନ ଆରମ୍ଭ ହେଇଗଲାଣି, ଦେଖିବ ଯଦି ଆସ ! (ପ୍ରସ୍ଥାନ)

ପରେଶ—ଧରଣୀ ! କାଙ୍ଗାଳି ଭୋଜନ ଦେଖି ଆସିବା ଚାଲ ।

ଧରଣୀ—ଚାଲନ୍ତୁ ସାର୍ !

ପରେଶ—ଅରେ ମା ! ତୁ ବି ଅମର ମଣ୍ଡଳ ଗଲ୍ପ କରୁଥା—ମୁଁ ଆସୁଛି ! ଆସ ଧରଣୀ—! (ଦୁହେଁ ଚାଲିଗଲେ)

ଅରୁଣା—(ଅମରଙ୍କୁ) କହିବ ନା ଏମିତି ଠିଆ ଠିଆ ବୁଲିଯିବ ?

ଅମର—ମତେ ପଢ଼ ବସାଅ ଦେଇଯାଉନ୍ତୁ ଭଲହୁଅନ୍ତା ।

ଅରୁଣା—ବସାଅ ! ତମ୍ଭ ନା ପୂର୍ବରୁ ବସାଏ ? କଣ ହେଇଚ କି ତୁମର ଅମରବାବୁ ?

ଅମର—କିଛି ହୋଇନ !

ଅରୁଣା—ଦେଖ ! ଏ ଉପହାରଟା କଣ ମତେ ନ ଦେଇ ଫେରେଇ ନେବ ? ତାହିଁକି ଏ ଯାଏ ଦେଉନ ?

ଅମର—ଉପହାରଟାକୁ ହାତରେ ଧରି ଦେବା କଥାଟାକୁ ଏକାବେଳକେ ଭୁଲିଯାଇଛି—ନିଅ ।

ଅରୁଣା—ଅନ୍ତର ବନ୍ଧନ କଥା ତୁମେ ଏମିତି ଭୁଲିଯାଅ । (ଉପହାର ନେଇ ଛାତିରେ ଜାକିଧରିଲା ।) ତୁମର ସାନ୍ନିଧ୍ୟ ପାଇଁ ମୁଁ ଯେ କେତେ ବ୍ୟାକୁଳ ହୁଏ, ତା ତୁମେ ବୁଝିପାରିବନି ଅମର ବାବୁ ! ମୋର ଏ ଜନ୍ମଦିନରେ ପ୍ରଥମେ ତୁମେ ଆସି ମତେ ଅଭିନନ୍ଦନ ଜଣେଇବା କଥା—ଅଥଚ ତୁମେ ଆସୁଚ ସାଢ଼େ ନଅଟା ପରେ— ଏଇଟା କଣ ତୁମର···

ଅମର—ଅରୁଣା ! ମୋର କାମର ଗୁରୁତ୍ୱ ଯଦି ତୁମେମାନେ ନ ବୁଝି ଏମିତି କଟୁ ସମାଲୋଚନା କରିବ—ତେବେ ମୁଁ ନାଚାର ! ଅଚ୍ଛା, ଚାଲ

ଦେଖି, ଯେଉଁ ଗାଁରେ ସାତ ଜଣ ଲୋକ ଦିନ ଦିଟା ଭିତରେ ମରିଗଲେଣି ସେ ଗାଁକୁ ଆଉ ଯିବା ମୋର କର୍ତ୍ତବ୍ୟ ନା ତୁମର ଏଠିକି ଆସି ବନ୍ଧୁ ବାନ୍ଧବଙ୍କ ମେଳରେ ଫୁର୍ତ୍ତି କରିବା ..

ଅରୁଣା — ଇସ୍ — ତୁମେ ଏମିତି କହି ପାରୁଛ ? ମୋ ଜନ୍ମଦିନର ଖୁସିକୁ ତୁମ ପାଖରେ କିଛି ନାହିଁ ? ସକାଳେ ଆସି ଅନ୍ତତଃ ମତେ ଦେଖାକରି ଯାଇ ପାରିଥାନ୍ତ । ଅମରବାବୁ, ସତରେ ତୁମେ ଭାରି ନିଷ୍ଠୁର ! ଆଘାତ ଦେବାକୁ ଭାରି ଭଲ ଲାଗେ—ନା ?

ଅମର — ଏଥିରେ ଆଘାତ ନପାଇ ବରଂ ଖୁସି ହେବା ଉଚିତ । କର୍ତ୍ତବ୍ୟ-ପରାୟଣ ହେବା କଣ ଅପରାଧ ?

ଅରୁଣା — ଅମର ବାବୁ ! ମୋ ମନ କଥା ମୁଁ ତୁମକୁ କେମିତି ବୁଝେଇବି ? ମନ କହୁଛି, ତୁମ ହୃଦୟ ଏକ ସୁନ୍ଦର ନୀଡ ରଚନା କରି ଶୀଘ୍ର ତୁମର ସୁଖଦୁଃଖରେ ମୁଁ ଭାଗୀ ହେବି । ବାରମ୍ବାର ତୁମଠୁ ଏମିତି କୈଫିୟତ୍ ଶୁଣିବାଠୁ ପାଖରେ ରହି ତୁମର ସବୁ କାମରେ ଅଂଶୀଦାର ହୋଇଯିବା ଭଲ ।

ଅମର — ଅରୁଣା···

ଅରୁଣା — ହଁ ଅମର ବାବୁ ! ଦିବ୍ୟ ଆଶା···ଦିବ୍ୟ କଳ୍ପନା — ରାତି ରାତି ଶୋଇବା ବେଳା ମୁଁ କେତେ ଦେଖିଛି । ତୁମର ଛବି ରୂପ—ଛବି କଥା—ମୋ ଦୃଷ୍ଟିରେ ଯେମିତି ଫୁଟିଉଠେ ଦେଖିଛି ପ୍ରେମର ଅସୁମାର ଫୁଲ । ଆଜି ମୋର ମନ, ପ୍ରାଣ, ଦେହ ସବୁ କିଛି ଖୋଜେ ତୁମର ସାନ୍ନିଧ୍ୟ । (ଅଗ୍ରସରିଲା)

ଅମର — ଏଇଟା ମୁଗ୍ଧମାନଙ୍କର ସ୍ୱପ୍ନ ବିଳାସ । ଯେଉଁ ସମାଜରେ ଆମେ ରହିଛେ, ତାର ନିୟମକାନୁନରୁ ଆମେ କଣ ଦୂରେଇ ଯାଇ ପାରିବା ? ତୁମ ମୋ ଭିତରେ ଏକ ଘୋର ବ୍ୟବଧାନ···

ଅରୁଣା — ବ୍ୟବଧାନ ? (ହସି) ଯେ ସବୁ ତୁମର ମନର ଭୁଲ ଧାରଣା ଅମର ବାବୁ ! କାହିଁ — ମୁଁ ତ କୌଣସି ବ୍ୟବଧାନ ଦେଖି ପାରୁନି ? ତୁମେ ମୋର କେତେ ନିକଟରେ—(ଅମର ଦେହକୁ ଆଉଜିଗଲା)

ଅମର—(ହସି) ଅରୁଣା ! ସତମତ ପାଗଳାମି ଆରମ୍ଭ କରଦେଲ ! ତୁମ ବାପା ଆସି ଦେଖନ୍ତୁ ସବ ··

ଅରୁଣା—ଭୟ କରବାର କଣ ଅଛି ? ସେ ତ ତୁମକୁ ଆଉ ମତେ ଏକା ଏକା ଛାଡ଼ି ଦେଇ ଯାଇଚନ୍ତି ।

ଅମର—ବୁଝିଲ—ବାଲ୍ୟବିବାହର ମାୟା ଏ ଦେଶରେ ବହୁତ ବଢ଼ିଯାଇଚି ! ହେଲେ ଆମେ ତାଠାରୁ ଦୂରରେ ରହିପାରିଲେ ଭଲହୁଅନ୍ତା ।

ଅରୁଣା—ବାଲ୍ୟବିବାହ ! ଏଇଟା କଣ ବାଲ୍ୟବିବାହ ? ତୁମେ ଆଉ ମୁଁ ବିବାହ ବନ୍ଧନରେ ବାନ୍ଧ ହେବାକୁ ଯାଉଚେ···

ଅମର—କିନ୍ତୁ ତା ପୂର୍ବରୁ କୌଣସି ପ୍ରକାର ଦୁର୍ବଳତା ଆମ ପାଖରେ ରହିବା ଉଚିତ ନୁହେଁ । ଆମର ଦାମ୍ପତ୍ୟଜୀବନ ଯଥେଷ୍ଟ ଦେରି । ବିବାହ ନ ହେବା ପର୍ଯ୍ୟନ୍ତ···କୁ କପୁଡା ଏଠ ପାଖକୁ ନବାବେଲେ ହୁଏତ ଖସି ପଡ଼ିପାରେ ।

(ଭିତରୁ ମାଟେକଣବାବୁଙ୍କର ଆସିବା ଶବ୍ଦ ଶୁଣି ଅରୁଣା ଅମରଠାରୁ ଦୂରେଇଗଲା)

ମାଟେକଣ—ନୋ—ନୋ—ଅମର ! ଏ ତୁମର ମସ୍ତବଡ ଦାମ୍ପତ୍ୟ ଦୁର୍ବଳତା—ଏ ଦାମ୍ପତ୍ୟ ଦୁର୍ବଳତାର କ୍ଷମା ନାହିଁ ! ଅରୁର କାନ୍ଦୁଦନରେ ତୁମେ ଅସିବ ଭେତରେ ? ନା-ନା, ଏଥିପାଇଁ କ୍ଷମା ନାହିଁ । ତୁମର ଆଉ କୌଣସି କଥା ଶୁଣାଯିବନି କି ଭବିଷ୍ୟତରେ ଏପରି ବ୍ୟବହାର ପାଇଁ ସୁଯୋଗ ଦିଆଯିବ ନାହିଁ । ତୁମେ ଜାଣ ଅମର ! ଅରୁ ଆଉ ତୁମକୁ ନେଇ ମୋର ଯୋଉ କଳ୍ପନା—ସେ। ମୋର ନାହିଁକି—ତୁମ ବାପାଙ୍କର ମଧ୍ୟ ଏଇ କଳ୍ପନା ଥିଲା । ସେ କଳ୍ପନାକୁ ବାସ୍ତବତାରେ ପରିଣତ କରିବା ପାଇଁ ସମସ୍ତ ଆଜ ଆସିଚି । ମୁଁ ଠିକ୍ କରିଚି ଆଗାମୀ ଲଗ୍ନରେ—ଅର୍ଥାତ୍ ଏଇ ମାସ ପନ୍ଦର ତାରିଖରେ ଅରୁ ଆଉ ତୁମର ବିବାହର ହେବ ।

ଅମର—ସାର୍ ··

ମାଟେକଣ—ହଁ, ସେଥିପାଇଁ ସବୁ ପ୍ରକାର ଆୟୋଜନ କରି ସାରିଚି । ଏ ବିବାହ ଶେଷ ନହେଲେ ମୁଁ ଶାନ୍ତି ପାଇବନି । ଆସ, ଅସ । (ଚାଲିଗଲେ)

ଅରୁଣା—(ହର୍ଷ) ଆସ···ଅରେ ଅପନା ! (ଟାଣି ଟାଣି ନେଇଗଲା)

# ଦ୍ୱିତୀୟ ଦୃଶ୍ୟ

[ ଧରଣୀ ଦାସର ଅଗଣା—ଚମ୍ପା ମହା ବ୍ୟସ୍ତରେ ଏ ପାଖ ସେ ପାଖ ହେଉଛି । ବାହାରୁ ଧାଇଁ ଧାଇଁ ପ୍ରବେଶ କରୁଛି ନିତ୍ୟାନନ୍ଦ । ]

ଚମ୍ପା—କଣ ହେଲାକରେ ନିତ୍ୟ ? ଏମିତ କାନ୍ଦୁଛୁ କାହିଁକି ?

ନିତ୍ୟାନନ୍ଦ—ବୋଉଲୋ...

ଚମ୍ପା—ଓ-ଲୋ—ଅରେ କଣ ହେଲା କହ ?

ନିତ୍ୟାନନ୍ଦ—ବୋଉଲୋ ! ଓକିଲ ବାବୁଙ୍କ ଝିଅ ଅରୁଣା—ମତେ ବାହା ହେବନି ବୋଲି ଅନେକ ଦଫା ଦଫା ମନା କରିଦେଲା । ଆଉ ମୁଁ ବାହା ହେବାକୁ ଜିଦ୍ ଧରିବାରୁ ମତେ କୁକୁର ଲଗେଇ ଘରୁ ବାହାର କରିଦେଲା ।

ଚମ୍ପା—ଏଁ—ସେ ଟୋକୀର ଏତେ ବଡ଼ପଣ ? ମୋ ପୁଅକୁ କୁକୁର ଲଗେଇ ବାହାର କରିଦେବ ? ତାର କଳାକୁଟା ଦେବେଇ ଖାଇପିବନି ?

ନିତ୍ୟାନନ୍ଦ—ବୋଉଲୋ ! ବାପାଙ୍କର ସେ କ'ଣ ଅକଲ ? ମତେ ଏମିତ ଅବୁକୁ ଅର ସେଇଁକାହିଁକି ଶିଶୁପାଳ କରୁଛନ୍ତି ?

ଚମ୍ପା—ଆଜି ଆସନ୍ତୁ ସେ କଲିକତାରୁ—ତାଙ୍କର ଦିନେ କି ମୋର ଦିନେ ! ମୋ ପୁଅ ଅପମାନ ପାଇବ—ମୁଁ ଏକଥା କାହାକୁ କହିବି ! (କାନ୍ଦିଲେ)

ନିତ୍ୟାନନ୍ଦ—ବୋଉଲୋ ! ତା ବାହାଘର ଅମରବାବୁ ସହିତ ଠିକ୍ ହୋଇ ଯାଇଛି !

ଚମ୍ପା—ସତେ ? ହଉ ଦେଖାଯିବ—ତୁ ଆଉ ବ୍ୟସ୍ତ ହନା—ଆଜି ମୁଁ ତାର ଫଇସଲା କରିଦେଉଛି ।

ନିତ୍ୟାନନ୍ଦ—ବୋଉଲୋ ! ମତେ ଦଶ ଟଙ୍କା ଦଅନ୍ତୁନ ! ମାଇଣ୍ଡ୍ ଟା ଅତି ଖୁନ୍ତୁଳାର ହୋଇଯାଉଛି । ଟିକେ ସିନେମା ଦେଖି ଆସିଲେ ଭଲ ଲାଗନ୍ତା ।

ଚମ୍ପା—ସିନେମା ଯିବୁ ? ହାଁ, ଭୁଲ ଅଫିସରୁ—ନେ ଟଙ୍କା !

(କାନରୁ ଖୋଲି ଟଙ୍କା ଦେଲେ)

ନିତ୍ୟାନନ୍ଦ—ବାଳ ବୋଝ, ବାପାଙ୍କ ସବୁକଥା ପଚାରୁ—ମୁଁ ତାଙ୍କ ପୁଅ ନା ମୁଁତେ କୋଉଠୁ ମାଗି ଆଣିଥିଲେ ?

ଚମ୍ପା—ମୁଁ ଏବଠୁ ଏଇଠି ବର୍ଷକରେ ପୁଅ ! ସେ ତୋର ବାପା ହେଲେ ତ ମୋର କଣ ଗଲା ? ମୋର ପୁଅ ଅପମାନ ପାଇବ, ମୁଁ ତାଙ୍କୁ ଛାଡ଼ିବ ?

ନିତ୍ୟାନନ୍ଦ—ବୋଉଲୋ···

ଚମ୍ପା—ଓଲୋ !

ନିତ୍ୟାନନ୍ଦ—ଆଜି ସବୁର ନିଷ୍ପତ୍ତି କରିବୁ !

( ପ୍ରସ୍ଥାନ । ଚମ୍ପା ଠିଆ ହୋଇଥାଏ । ଧରଣୀ ବାହାରୁ ଆସି ଘର ଭିତରକୁ ପଶିଯାଉଥିଲେ—)

ଚମ୍ପା—ଠିଆହୁଅ ! କୁଆଡ଼େ ଯାଉଚ ?

ଧରଣୀ—ଘର ଭିତରକୁ ।

ଚମ୍ପା—ଯାଇପାରିବନି !

ଧରଣୀ—ଯାଇପାରିବନି ? ମୋ ଘର—ମୁଁ ଘର ଭିତରକୁ ଯାଇପାରିବନି ?

ଚମ୍ପା—ନା—ଯାଇ ପାରିବନି । ମିଣିପକୁ ଦେଖ ! ସ୍ୱାଙ୍କ ଘର ! ଭୁଲ ହେ, ତୁମର କି ଘର ?

ଧରଣୀ—କଣ ତୁମ ମୁଣ୍ଡଫୁଣ୍ଡ ସବୁ ବିଗିଡ଼ି ଗଲାଣି କି ?

ଚମ୍ପା—ମିଣିପକୁ ଦେଖ ! ଘର ବୋଲି କହୁଚ, ଲାଜ ଲାଗୁନି ?

ଧରଣୀ—କାହିଁକି ? ଲାଜ ସବୁ ତୁମ୍ଭମାନଙ୍କ ଛାଡ଼ି କୋଉଦିନ ଅନ୍ୟମାନଙ୍କ ପାଖକୁ ଆସିଗଲାଣି ସେ କଥାତ ମତେ ମାଲୁମ ନାହିଁ !

ଚମ୍ପା—ମାଲୁମ ହେବ କିମିତି ? ପର କଥା କହୁ ବୁଝିଚ—ଖାଲି ତ ବାହାରେ ବାହାରେ ଉଡ଼ କଟୁଚ ତୁମେ । କାନ୍ତୁର ନେଇ ମନ୍ଦି ଦେହରେ କଲଣି—ତଥାପି ତୁମର ନିଦ ଭାଙ୍ଗୁ ନି ?

ଧରଣୀ—କଣ ହେଉଚି ନିତ୍ୟାବୋଳ ? ମତେ ଟିକେ ସଫା କରି କୁହ !

ଚମ୍ପା—ଏତେ ସହଜରେ ମୋ ପେଟରୁ କଥା କାଢ଼ିନେବ ?

ଧରଣୀ—ଚମ୍ପାବତୀ ! (ଆଦରକରି)

ଚମ୍ପା—ଅଲକ୍ଷଣ, କଥା ଗାଲ୍ଭ ଭେଟେଇ ଦାନ୍ତରେ ହୁଠିଲଣି—ସ୍ୱାସ୍ଥ୍ୟ ସବୁ ଅଚ୍ଛା ଲଗିଚ ! ଅଳ୍ପ ଧ୍ୟାର ଫଇସଲ କର !

ଧରଣୀ—ହଇହୁ କରଚ—ହେଲେ କଥାଟା କୁହ !

ଚମ୍ପା—ହଉଏ ! ସେ ଙ୍କେଲ ବାବୁର ଝିଅ ବୋଲି ଯୋଉଟାକୁ ଅଣି ରଖିଚ, ସେଇଟା ଅଙ୍କ ନାତିଅଙ୍କୁ କୁକୁର ଲଗେଇ ଘରୁ ବାହାର କରିଦେଲ !!

ଧରଣୀ—କଣହେଲ !! ମୋ ପୁଅକୁ କୁକୁର ଲଗେଇ ଘରୁ ବାହାର କରିଦେଲ ? ତା ବଣ୍ଟଦାନ୍ତ ମୁଁ ଖାଣ୍ଡିଦେବନି !

ଚମ୍ପା—ଅନ୍ଧର ଶୁଣ—ନାତିଅଙ୍କୁ ବାହ୍ୟା ହବନି ବୋଲି ପଫା ପଫା କହି-ଦେଲ । ଅମରବାବୁ ପାଖରେ ତା ବାହାଘର ଠିକ୍ ହେଇଯାଇଚ ।

ଧରଣୀ—ଜାଣିଚୁ ଚମ୍ପା— ନିଜକୁ ବଡ଼ ଲୋକର ଝିଅ ବୋଲି ଭାବି ସେ ସବୁଗର ବୁଢ଼ାକୁ ହାତ କଟେଇଚ ।

ଚମ୍ପା—ଅଳ୍ପ ଧ୍ୟାର ଫଇସଲ କର । ତୁଇ ହେ, ତୁମ ପୁଅଟା ଏମିତ ଶିଶୁପାଳ ହବ—ପିଲଟା ଅଙ୍କ କାଢ କାଢ ତାର ମୁହଁ ଶୁଖିଲେଣି ।

ଧରଣୀ—କୁଅଡ଼େ ଗଲ ସେ ହତଭାଗା ?

ଚମ୍ପା—ମନ ଠିକ୍ କରିବାକୁ ସିନେମା ଯାଇଚୁ ।

ଧରଣୀ—ଯାଇଚି—ଭଲ ! ବୁଝିଲ ଚମ୍ପା, ଖାଲି ଏଇଥିପାଇଁ ସେ ଟୋକୀଟାକୁ ବାହ୍ୟା ହବନି ବୋଲି ମନା କରିଚ । ଏତେ ଟୋକାଟାଏ ହେଲଣି—ସିନେମା ଦେଖିବା ଛଡ଼ା ଆଉ କିଛୁ କାମ ନାହିଁ ? ଚୋଉ ଝିଅ ଏଇଲା ଗୁଣବନ୍ତ ପୁଅକୁ ବାହ୍ୟା ହବ କୁହ ତ ?

ଚମ୍ପା—ନା କାହିଁକି ବାଧା ହେବ ? ପୋଖରୀରେ ପଶି ଦେଲ ଛଡ଼େଇବା ଆମେ—ଆଉ ଭାତ ଖାଇବ ଆଉ ଜଣେ ? ଏଇଥିପାଇଁ କମ୍ ଟଙ୍କା ଖର୍ଚ୍ଚ କରୁଚ ?

ଧରଣୀ—ହେଲେ ଚମ୍ପା—ବର୍ତ୍ତମାନ ଆମେ କଣ କରିବା ?

ଚମ୍ପା—ମୁଁ ସେ ସବୁ କିଛି ଜାଣେନା—ମୁଁ କହିବି କଣ କରିବ ? ମୋ ପୁଅ ଅପମାନ ପାଇଚି—ଏ ଅପମାନ ଆମ ସମସ୍ତଙ୍କର । ସେ ପାଇଁ ଯାହା କରିବାର କଥା କର, ନଇଲେ ଏ ଘରେ ତୁମର ସ୍ଥାନ ନାହିଁ । ଗୋଟେ ଭିକମାଗୀ ଟୋକୀ—ଆଜି ବଡ଼ ହେଇଗଲା ବୋଲି ଇନ୍ଦ୍ର ଚନ୍ଦ୍ର ମାନିବନି ?

ଧରଣୀ—ଆଚ୍ଛା ଆଚ୍ଛା, ଆଉ ପାଟି କରନା—ଏକଥା ବାହାରକୁ ଗଲେ କଣ ହେବ ଜାଣିଚ—ମୁଁ ସେ ସବୁ ବୁଝୁଚି, ଭିତରକୁ ଚାଲ ।

ଚମ୍ପା—ମୁଁ ଭିତରକୁ ଯାଉଚି—ହେଲେ ସେ ଭିତରକୁ ତୁମେ ଯାଇ ପାରିବନି । ବାହାଘର କଥା ଫଇସଲା ନ ହେବା ପର୍ଯ୍ୟନ୍ତ ଏ ଘର ଭିତର ତୁମ ପାଇଁ ବନ୍ଦ । (ପ୍ରସ୍ଥାନ)

## ତୃତୀୟ ଦୃଶ୍ୟ—

[ଗ୍ରାମପଥ—ସନ୍ଧ୍ୟା—ଗୋଟାଏ ଅଡ୍ଡା ସମସ୍ତେ ଉପସ୍ଥିତ—ଅନ୍ୟ ଅଡ୍ଡା ଧରଣୀକୁ ଆସୁଥିବାର ଦେଖି ସେ ବସିପଡ଼ିଲେ—ଚପରାଶୀ ଦଳରୁ ବଶିଆ ଧପାଇଲା—ଧରଣୀକୁ ଦେଖି ।]

ବଶିଆ—ଧରଣୀ ବାବୁ ! କେତେ ଦିନ ହେଲା ଦେଖା ନ ଥିଲ ? କୁଆଡ଼େ ଯାଇଥିଲ କି ?

ଧରଣୀ—ଜବୁଲ୍ ଭାମଳର ପରା ବାହାରକୁ ଯାଇଥିଲି—ବାବୁଙ୍କ ଖବର କ'ଣ ?

ବଣିଆ—ଖବର ଆଉ କଣ ବାବୁ ! ଅବୁଦେଇ ଅମର ବାବୁଙ୍କର ବାହାଘର ପରା ? ଜାଣନ୍ତି କଣ ବୁଝିଚ । ଆଉ ଦଶଦିନ ପରେ ବାହାଘର ।

ଧରଣୀ—ଏ ଦଶଦିନ ପରେ ଅବୁଦେଇ ଅମର ବାବୁଙ୍କର ବାହାଘର—? ଏକଥା ସତ ?

ବଣିଆ—ବାବୁ, ତମେ ତ ନଥିଲ—ବାବୁ ଆମର କେୟାଟପ ଭାଙ୍କ ଦନ ଧରି ଯାଉଚନ୍ତି ।

ଧରଣୀ—ତଣ, ଅମର ବାବୁ ବି. ଡ଼ି. ଓ. ଙ୍କ ସହିତ ବାହାଘର ଠିକ୍ ହେଇଗଲା ?

ବଣିଆ—ହଁ ପରା—ଅବୁଦେଇଙ୍କ ମନ କେତେ ଖୁସି—ନାଚ ନାଚ ଘର ଫାଟୁଚନ୍ତି ।

ଧରଣୀ—ସତେ ?

ବଣିଆ—ବାବୁ ! ମତେ ବେଳ ନାହିଁ—ତୁମେ ଘରକୁ ଯାଅ—ବାବୁଙ୍କଠୁ ସବୁ ଶୁଣିବ । (ଅଗେଇଗଲା)

ଧରଣୀ—ଜଣାକୁ ଜଣା ଦେଇ ଅଡ଼େଇବାକୁ ହବ—ନା ରହିବ ବାଁଶ, ନା ବଜେଇବ ବାଁଶୀ ! (ମୁହଁରେ ପେଶାକେ ହସ—ପ୍ରସ୍ଥାନ । ବଣିଆ ଚାଲିଯାଉଥିବା ସମୟରେ ଯମଦେବ୍ ଡାକିଲା)

ଯମଦେବ୍—ହେ ବୁଢ଼ାବାବୁ ! ବୁଢ଼ାବାବୁ ! କାହାର ବାହାଘର ହଉଚି ? ଆମ ଦୋବଳମାନଙ୍କୁ ଖାଇବାକୁ ମିଳିବ ?

ବଣିଆ—ପନ୍ଦରପାକର ଖାଇବେ, ତୁମେ କାହିଁକି ବାଦ୍ ଯିବ ? ଦିନେଶ ବାବୁ ଓକିଲଙ୍କୁ ଜାଣିଚ୍—ତାଙ୍କ ଝିଅ ଅବୁଦେଇର ବାହାଘର ।

ଯମଦେବ୍—ବୁଢ଼ାବାବୁ ! ତୁମ ଅବୁଦେଇ ପରା ହଜିଯାଇଥିଲେ ?

ବଣିଆ—କେବେଠୁ ଘରକୁ ଫେରିଲେଣି ନା !! ଅମର ବାବୁ ବି.ଡ଼ି.ଓ.ଙ୍କ ସହିତ ପର୍ଶୁ ବାହାଘର ହଉଚି—ବାହାଘର ଦିନ ଆସିବୁ—ଭଲକରି ଖୀରପୁରି ଖାଇବାକୁ ଦେବି ।

ସମସେର୍—ସିଦ୍ଧ ବୁଢ଼ାବାବୁ—ସିଦ୍ଧ। ହେଲେ ବାବୁ, ଏ ଲୋକଟା ଉଣ ଏମିତି କଥା କହିଗଲା ?

ଜଗିଆ—ହୁଜୁର ହୁଜୁର—ଏ ଲୋକଟା ଅଦୌ ଭଲଲୋକ ନୁହେଁ। ବାବୁ ଅମର ସରଳ ଲୋକ—ଶୋକରେ ପଡ଼ିଚନ୍ତି ବୋଲି ଏ ତାର ଫାଇଦା ଉଠେଇଛି। ଏ ପରି ବୁଦ୍ଧିଆ ଅଦ୍ଭୁତ ଲୋକଙ୍କ ପାଖରେ ତା ଯୁକ୍ତି ଖଟୁଥିବ। ବାହାଘର କର ଆଗଣା—ଏ ଭଟ ଜମ୍ ଜଲୁ—ଜଗିଆ—ମୁଁ ଯାଉଛି। (ପ୍ରସ୍ଥାନ)

ସମସେର୍—କ୍ୟା ବୋଲା, ନା ରହେଗା ବାଁସ୍—ନା ବଜେଗୀ ବାଁସୁରୀ—ହୁଁ ଃ...ମୈଁଭି ସମସେର୍ ହୁଁ ! (ପ୍ରସ୍ଥାନ)

## ଚତୁର୍ଥ ଦୃଶ୍ୟ—

[ ଅମରର ଶୋଇବା ଘର। ରାତି ଘୋର। ଅମର ବସିଥାଏ ଚିନ୍ତିତ ହୋଇ। voice and direction ]

ସାହେବ—ତମେ ଠିକ୍ କହୁଚ ଅମର ! ....ତମେ ଥିଲ ତମ ବାପାଙ୍କର ଏକମାତ୍ର ସନ୍ତାନ, ଆଉ ଅରୁ ଥିଲା ମୋର ଏକମାତ୍ର କନ୍ୟା। ତୁମ ଦୁହିଁଙ୍କୁ ନେଇ ଆମେ ଦୁଇ ବନ୍ଧୁ ଏକ ଭବିଷ୍ୟତ କଳ୍ପନାରେ ବିଭୋର ହୋଇଥିଲୁ। ହେଲେ...ହେଲେ...ଏସବୁ କଣ ହୋଇଗଲା ଅମର ?

ସମସେର୍—ବାବୁ, ପାଠ ପଢ଼ାଚ, ବଡ଼ ନୌକରୀ କରାଚ—ହେଲେ ଏ ଲୋକର ଲଡ଼୍‌କୀକୁ ଜାହାନ୍ନମକୁ ଠେଲିଦେଲ କାହିଁକି ?

ଅମିନା—ବାବୁ ! ସତରେ ତମର ଅମ ହୃଦରେ ଏତେ ଦୟା, ଏତେ ମମତା !!

ସାହେବ—ଅମର ! ତୁମକୁ ଆଉ ଅରୁକୁ ନେଇ ମୋର ସ୍ୱପ୍ନ କଳ୍ପନା—ଆଦୌ ଏକା ମୋର କାହିଁକି—ତମ ବାପାଙ୍କର ମଧ୍ୟ ସେଇ ଇଚ୍ଛା ଥିଲା—ଆଜି ମୁଁ ତାକୁ ବୁଝାପଡ଼ି କରିବାକୁ ଯାଉଚି।

ମାନେ ମୁଁ ଯଦି ବଞ୍ଚନ୍ତୁ ଅସନ୍ତା ଲଗ୍ନରେ—ଅର୍ଥାତ୍ ଏଇ ମାସ ପନ୍ଦର ତାରିଖରେ ଅରୁକୁ ମୁଁ ତୁମ ହାତରେ ବାନ୍ଧି ଦେବି ।

ସମସେର୍—ତମେ ଅମିତାକୁ ସାଦ କରି ପାରିବ ? ତାକୁ ସାଦ କରି ଏ ସମାଜରେ ଚଳେଇ ପାରିବ ? ବୃଦ୍ଧ ବାବୁ ! ତୁମେ ତାକୁ ସାଦ କରିପାରିବ···

(ଅମର ଚକ୍ରିତ ହୋଇ ଖଟ ଉପରେ ପଡ଼ିଗଲେ । କିଛି ସମୟ ପରେ ଛପି ଛପି ପ୍ରବେଶ କରିଛି ଧରଣୀ—ହାତରେ ଛୁରି—ମାରିବାକୁ ଉଦ୍ୟତ ହେବାବେଳେ ସମସେର୍ ଧରଣୀର ହାତରୁ ଛୁରି ଛଡ଼େଇନେଇଛି ।)

ଧରଣୀ—କିଏ ? (ସମସେରକୁ ଦେଖି) ଅମରବାବୁ ! ଅମରବାବୁ ! ମତେ ମାରିପକେଇଥିଲା ।

ଅମର—(ଉଠି) କିଏ ?

ଧରଣୀ—ଏ ସୈତାନ୍ ତୁମକୁ ମାରିବାକୁ ଆସିଥିଲା । ସେଟାକୁ ମୁଁ ଧରିଥିଲେ । ଏଇ ଦେଖ ତା' ହାତରେ ଛୁରି ।

ସମସେର୍—ଚୁପ୍ ବୋଲ ବେଇମାନ କୁତ୍ତା···

ଅମର—ଏ କଣ କରୁଛ ସମସେର୍ !

ସମସେର୍—ତୁମେ ବୁଦ୍ଧ ଅମରବାବୁ ! ମୁଁ ଏହାକୁ ଖୁନ୍ କରିଦେବି !

(ଛୁରି ଧରି ଅଗେଇଲା)

ଅମର—(ବାଧାଦେଇ) ସମସେର୍ !

ସମସେର୍—ଅମରବାବୁ ! ଏ କେବଳ କେତେ ସୈତାନ୍, କେତେ ପାଜି···

ଧରଣୀ—କିଏ ସୈତାନ ଜାଣିବାକୁ ଆଉ ବାକି ନାହିଁ । ଆରେ ସେଟାକୁ ଧନେଶବାବୁ ଗୋଟେ ଜରୁରୀ ଖବର ଦେଇ ମତେ ପଠେଇଥିଲେ—ତା ନହେଲେ ଅମରବାବୁ ଭଲଥା ଲେଖା··ତେବେ ଧର୍ମ ସହିବ ନାହିଁ !

ସମସେର୍—(ଗର୍ଜି) ଖାମୋସ୍—ଖୁନ୍ କରିବାକୁ କିଏ ଆସିଥିଲା ? ତୁ ନା ମୁଁ ?

ଅମର—ସମସେର୍ ! ତୁମକୁ ମୁଁ ଭାବିଥିଲି ଦେବତା—କିନ୍ତୁ ତୁମେ ଏତେ ଜଘନ୍ୟ ହୋଇପାରିବ ବୋଲି ମୋର ଧାରଣା ନଥିଲା !

ସମସେର୍—ଅମରବାବୁ ! (ବିସ୍ମିତ ହୋଇ)

ଅମର—ଏତେ ରାତରେ ମୋ ଶୋଇବା ଘର ଭିତରକୁ କାହିଁକି ଆସିଥିଲ —ଶୁଣେ ?

ଧରଣୀ—ହଁ, ସେଇକଥା କହ—ଏତେ ରାତରେ ତୁ କାହିଁକି ଆସିଥିଲୁ ?

ସମସେର୍ – ତୁ କାହିଁକି ଏତେ ରାତରେ ଆସିଥିଲୁ—ଆଗେ ଜବାବ ଦେ !

ଅମର—ତାର ଜବାବ ମୁଁ ଦେଉଛି । ସତେନଣବାବୁଙ୍କର କର୍ମସ୍ଥ ଭାବରେ ଧରଣୀବାବୁ ଏଠିକି ଆସନ୍ତି । ତାଙ୍କପାଇଁ ବଜାରଘର ଦରକାର ନାହିଁ । ହେଲେ—ତୁମେ ଏତେ ରାତରେ—ଚୁପ୍ ଚାପରେ—ମୁଁ ଶୋଇବା ଅବସ୍ଥାରେ ମୋ ଘର ଭିତରକୁ ଆସିଥିଲ କାହିଁକି ? କଣ ଥିଲା ତୁମର ମତଲବ ?

ସମସେର୍—ଅମରବାବୁ ! ତୁମେ ବି ଏ କେଉଁଟା କଥାରେ ଭୁଲିଗଲ ?

ଅମର—ଭୁଲି ନାହିଁ—ସବୁତ ଏ ସଂସାରଟା କଣ ? ଦାଗ ଦେଲେ ତାର ପ୍ରତିଦାନ କଣ ଇମିତି ଭାବରେ ଗ୍ରହଣ କରିବାକୁ ପଡ଼େ ?

ଧରଣୀ—ଏ ସେଇଭାନ୍ଟା ଗାଁରେ ପୁଲିସକଲେ କଣ ହବ ଆଉ ! ସାରୁ ଯାଉଛି ପାଉଛି ପୋଲିସରେ ଧରେଇଦେବା କଥା—ମୁଁ ଯାଉଛି ଖବର ଦଏ ! (ଯିବାକୁ ଉଦ୍ୟତ)

ଅମର – ପୋଲିସ ଡାକିବା ଦରକାର ନାହିଁ – ତୁମେ ଚାଲିଯାଅ ସମ୍ସେର୍ ! ଆଉ କେବେ ଇମିତି ଦୁଃସାହସ କରିବ ନାହିଁ ।

ସମସେର୍ – (ହସି ହସି) ବାଃ, ବାଃ – ବାଃରେ ଦୁନିଆ—ଉଲଟ ଲୋକ ଫଇସଲା ! ବେଟୀ ଅମୀନା (ଡାକ ଡାକ ଚାଲିଗଲା)

ଅମର—ତମେ ବି ଯାଅ ଧରଣୀ ବାବୁ ! ( ଧରଣୀ ଚାଲିଗଲା—ଅମର ଚୁପ୍‌ଟାକୁ ଉଠାଇ ଧରିବା ସମୟରେ) ସମସେର୍, ମୁଁ ତୁମକୁ ଭାବିଥିଲି ଦେବତା – ହେଲେ ତୁମେ ଏତେ ଜଘନ୍ୟ ହୋଇପାର !

## ପଞ୍ଚମ ଦୃଶ୍ୟ—

[ଦୀନେଶ ବାବୁଙ୍କର ଅଫିସ । ସମୟ ରାତ୍ର—ଦୀନେଶ ବାବୁ ବାରଣ୍ଡାରେ ଚଞ୍ଚଳ ହୋଇ ବୁଲୁଥିଲେ । ଆସିଲା ବଂଶିଆ]

ବଂଶିଆ—ବାବୁ ! ରାତ ଦୁଇଟାବେଳେ ତୁମେ ବାରଣ୍ଡାରୁ ଉଠି ଆସି ଏଠି ବୁଲୁଛ କାହିଁକି ? ରାତ ପାହିଲେ ବାହାଘର ।

ଦୀନେଶ—ବଂଶିଆ—ମନଟା କାହିଁକି କିଛୁ ଭଲଲାଗୁନି ।

ବଂଶିଆ—କିମିତି ଲାଗିବ ବାବୁ—ଅବୁ ଦେଇ ତାଙ୍କ ଶାଶୁ ଘରକୁ ଚାଲିଯିବେ—ଏ ଘର ପୁଣି ଶୂନ୍‌ଶାନ୍ ହୋଇଯିବ—ଭଲ ଲାଗିବ କେମିତି ?

ଦୀନେଶ୍—ଠିକ୍ ତା ନୁହେଁରେ ବଂଶିଆ ! କାଲି ଅବୁର ବାହାଘର । ମୁଁ ତାର୍ ବାପ । କିନ୍ତୁ କାହିଁକି ମୋ ମନରେ ବାପର ଦରଦ, ବାପର ଉନ୍ମାଦନା ଆସୁନି ।

ବଂଶିଆ—ବାବୁ !!!

ଦୀନେଶ—ମୋର ମନେ ହେଉଛି ମୁଁ ଯିମିତି ମାୟାଜାଲରେ ଛନ୍ଦି ହୋଇ ଯାଉଛି—ମୋର ନିଜର ରକ୍ତ ତା ଭିତରେ ନାହିଁ ।

ବଂଶିଆ—କ'ଣ ଉମ୍ପୁଳା କହୁଚ ବାବୁ—ମୁଁ ତ କିଛି ବୁଝିପାରୁନି !

ଦୀନେଶ—ତୁ ବୁଝିପାରିବୁନି—ମୋ ପରି ଶିକ୍ଷିତ ଲୋକ ଦୁଇ ଅନ୍ୟ କଥାରେ ଲିପିଯାଇ ପଦେ ପଦେ ନିଜର ନିଜତ୍ୱକୁ ଅନୁଭବ କରି ନ ପାରେ···

ବଂଶିଆ—କ'ଣ ସେମିତି ବାୟାଙ୍କ ପରି କହୁଚ ?

ଦୀନେଶ—ହଁରେ ବଂଶିଆ, ଏଇ କେତେ ଦିନ ହେଲା ଅରଡର ଅଣସ୍ୱସ୍ତି ଆସ୍ଥା ଯେପରି ଆସି ମୋ ମନ ଭିତରେ ଉଙ୍କି ମାରୁଛି; କହୁଚ—ତୁମେ ତୁମର ହଜିଲା ଧନ ଫେରିପାଇ ଆନନ୍ଦରେ ବିଭୋର ହେଉଚ—କିନ୍ତୁ ତା ଭିତରେ ମୋ ରକ୍ତର ସନ୍ଧାନ ପାଉଚ କି ? ଠିକ୍ ସେତିକିବେଳେ ମୋ ମୁଣ୍ଡଟା ଗୋଳମାଳ ହୋଇଯାଏ—ମୁଁ କିଛି ଭାବିପାରେନା ।

ବଂଶିଆ—ତା'ହେଲେ କ'ଣ···

ଘନେଶ—ନା—ନା, ଜନ୍ମରୁ ଆଜିଯାଏ ଏ ଦୁନିଆରେ ମୁଁ ତ କାହିଁ ଛଟପଟ ହେଉନାହିଁ ! ଜୀବନର ଏଇ ଶେଷ ସମ୍ପଦ ଅରୁଣାକୁ ଅନ୍ୟ ହାତରେ ଟେକି ଦେବାକୁ ଗଲାବେଳେ ବାପ ମନର ଅସ୍ଥିରତା ମୋ ମନରେ ତ ଆସୁନି ! ତଥାପି—ଏହାର କାରଣ କଣ ?

ରଶିଆ—ମୁଁ ମୂର୍ଖ ଲୋକ ବାବୁ—ମତେ କ'ଣ ଜଣା ? ତମେ ଚାଲ ବାବୁ ଶୋଇବ ।

ଘନେଶ—ଆଖିକୁ ନିଦ ଆସୁନରେ ରଶିଆ, ସ୍ୱରଆତ୍ମା ସେମିତି ଜଡ଼ତାରେ ଭରିଯାଉଚି । ସାରା ଶରୀରଟା ସେମିତି ଶୁଷ୍କ, ପ୍ରାଣହୀନ ହୋଇଯାଉଚି— ମୁଁ ସେମିତି ମୁଁ ନୁହେଁ—ଯନ୍ତ୍ରଦ୍ୱାରା ପରିଚାଳିତ ହୋଇ ମୁଁ ସେମିତି ଆଗକୁ ଆଗକୁ ମାଡ଼ି ଚାଲିଚି ।

ଅରୁଣା—(ବାହାରକୁ ଆସି) ବାବା ! ରଶିଆ ! ତମେ ସବୁ ଶୋଇ ନାହଁ କାହିଁକି ?

ଘନେଶ—ଅ—ମା—ଆ...ନିଦ ହେଉନି...ଟିକିଏ ବାହାରେ ବୁଲୁଥିଲି ।

ଅରୁଣା—କାହିଁକି ବାବା ! ତୁମର ଦେହ କ'ଣ ହେଉଚି ?

ଘନେଶ—ନା, ନା, ସେ ସବୁ କିଛି ନୁହଁ । ସବୁ ସ୍ନେହ ମମତା ତୁଟେଇ ଦେଇ ତୁ ଚାଲିଯିବୁ ତୋ ଘରକୁ—ଏତକ କଣ ସନ୍ତୋଷ ନୁହେଁ ମା— ଆଖିକୁ ନିଦ ଆସିବ କେମିତି ?

ଅରୁଣା—ତୁମେ ଚାଲ ବାବା—ଶୋଇବ ଚାଲ !

ଘନେଶ—ଅଚ୍ଛା—ଅଚ୍ଛା—ଚାଲ । (ଚାଲିଗଲେ)

## ଷଷ୍ଠ ଦୃଶ୍ୟ

[ ଅମୀନା ମାଠିଆ ଧରି ପାଣି ପାଇଁ ବାହାରିବା ସମୟରେ ସମସେର ଡାକନ୍ତି—]

ସମସେର୍—ଅମୀନା—ବେଟୀ ଅମୀନା !

ଅମୀନା—(ଯାଉ ଯାଉ ଅଟକି) ବାପୁ ! ବାପୁ ! ତମ ଆଖିରେ ଲୁହ...କ'ଣ ହେଇଚ ବାପୁ ?

ସମସେର୍—ବଦମାସ୍ ଧରଣୀ ଗ୍ରାମର ଗୋଟେ ନାଚଦାଣ୍ଡ ଝିଅକୁ ଆଣି ତୋ ବାପା ଆଖିରେ ଭେଲକି ଲଗେଇ ଦେଇଚ । ଅମରର ବାପା ଓ ତୋ ବାପାର ସର୍ତ୍ତ ଅନୁଯାୟୀ ଅମରର ବିବାହ ତା ସହିତ ହେବ । ଅମର ରାଜି ଅଛି ।

ଅମୀନା—ତା ପରେ ?

ସମସେର୍—ଧରଣୀ ତା ପୁଅ ସହିତ ସେ ଝିଅର ବାହାଘର କରାଇ ସମସ୍ତ ସମ୍ପତ୍ତିର ମାଲିକ ହେବାକୁ ଚାହୁଁଥିଲା । ଆଉ ସେଇଥିପାଇଁ ସେ ରାତ ଅଧରେ ଅମରକୁ ଖୁନ୍ କରିବାକୁ ଯାଇଥିଲା । ମୁଁ ନଥିଲେ ଅମରବାବୁ ଆଉ ବଞ୍ଚ ନଥାନ୍ତା ।

ଅମୀନା—ତୁମେ ତୁମର ସମସ୍ତ ଶକ୍ତି ଦେଇ ତାଙ୍କୁ ରକ୍ଷାକଲ । ତାପରେ...

ସମସେର୍—ବୁଦ୍ଧୁ ଅମର ଧରଣୀ କଥାରେ ଭୁଲିଯାଇ କହିଲା—ମୁଁ ଖୁନୀ, ମୁଁ ଡାକୁଅର, ସଇତାନ୍...

ଅମୀନା—ହେ ଭଗବାନ ! ଗରିବ ଉପରେ ତୁମର ଏ ଅତ୍ୟାଚାର କାହିଁକି ?

ସମସେର୍—ନା, ଏ ପାପ କରେଇଦେବନି—ତୁ ଯା...

ଅମୀନା—କୁଆଡ଼େ ?

ସମସେର୍—ତୁମ ଘରକୁ ।

ଅମୀନା—ହଁ...

ସମସେର୍—ଯିବୁନି ?

ଅମୀନା—ବାପୁ...ତୁମକୁ ଛାଡ଼ି ମୁଁ କୁଆଡ଼େ ଯିବନି ।

ସମସେର୍—ବେଟୀ ଅମୀନା ! ନା—ବାପପଣିଆର ଏତେ ବଡ଼ ଅମର୍ଯାଦା ମୁଁ କଣିପାରିବିନି । ତୋ ହକ୍‌ରୁ ତତେ କେହି ରୋକି ପାରିବେନି—ତତେ ଯିବାକୁ ପଡ଼ିବ ।

ଅମୀନା—ଫକିରବାବୁ ଯଦି ଅସ୍ୱୀକାର କରନ୍ତି ?

ସମସେର୍—ନେହିଁ—ଇଜ୍ଜତ ମମତାକୁ ଯଦି ସେ ଅସ୍ୱୀକାର କରେ ତାଙ୍କୁ ମୁଁ ଖୁନ୍ କରିବି—ତାର ସର୍ବନାଶ କରିବି—ସମସେର୍ ଅଲିର ସତ୍ୟଭାଙ୍ଗି ଭୁପର ପରିଣାମ ତାଙ୍କୁ ଭୋଗ କରିବାକୁ ହେବ ।

ଅମୀନା—ତୁମ ଅମୀନାକୁ ତୁମେ କ'ଣ ପାଖରୁ ଦୂରେଇ ଦେବ ବାପୁ ?

ସମସେର୍—ବେଟୀ, ବାପୁ ତୋର ଫକୀର ଆଦ୍‌ମୀ । ଘର ନାହିଁ, ଦ୍ୱାର ନାହିଁ—ତାର କିଛି ନାହିଁ । ଗୋଟିଏ ଦୁର୍ବଳ ମୁହୂର୍ତ୍ତର ଶିକାର ହୋଇ ତତେ ନେଇଆସିଲି । ହେଲେ ତୋର ଏଇ ବାପୁ ତାକ ମୋ ପଞ୍ଜର୍ ମନକୁ ଚହଲାଇ ଦେଲା । କିନ୍ତୁ ଅଜ ତତେ ନେଇ ମୁଁ କୁଆଡ଼େ ଯିବି—କଣ କରିବ—କିଛି ଭାବିପାରୁନି ।

ଅମୀନା—ବାପୁ, ଇମିତି କଥା କୁହନାହିଁ ।

ସମସେର୍—ଅଜଠୁ ଆଉ କାନ୍ଦିବନିରେ ମା ! ତତେ ତୋ ଜାଗାରେ ପହଞ୍ଚେଇ ଦେଲେ ମୋର କାମ ଶେଷ ।

ଅମୀନା—ଅବୁଝା ହୁଅନି ବାପୁ ! ମୁଁ ତୁମକୁ ଛାଡ଼ି କୁଆଡ଼େ ଯିବିନି !

ସମସେର୍—ଏବେ କଥା ବିଚାର କରିବାର ବୟସ ତୋର ହେଇନି । ତୁ ଚାଲ ମୋ ସାଙ୍ଗରେ ।

ଅମୀନା—ନାଁ, ନାଁ, ମୁଁ ଯିବିନି ବାପୁ—ମୁଁ ଯିବିନି !

ସମସେର୍—ଯିବୁନି ?

ଅମୀନା—ନାଁ ବାପୁ, ମୁଁ ଯିବିନି । (ବୁଲିଗଲା)

ସମସେର୍—ବେଟୀ—ବେଟୀ—ଯେ ଅଲ୍ଲା—ଏ ଖୋଦା—ମୁଝେ ଶକ୍ତି ଦୋ—ମାଲିକ, ମୁଝେ ଶକ୍ତି ଦୋ ।

## ସପ୍ତମ ଦୃଶ୍ୟ—

[ ଘନେଶ ବାବୁଙ୍କ ଘରେ ବାହାଘରର କୋଳାହଳ । ଆଜି ଅରୁଣର ବାହାଘର ]

ନିତ୍ୟାନନ୍ଦ—ଏ ପା  ପା···ପା···

ଜନାର୍ଦ୍ଦନ—ପାଞ୍ଚବାବୁରେ ! ତୁ ଆଜ୍ଞା ଶସିବ୍ କରିବାକୁ ଅଛୁକରେ ? ଆଉ କଏ ନାହିଁ ?

ନିତ୍ୟାନନ୍ଦ—ଅପନ୍ତୁ । ଅପନ୍ତୁ ।

ଜନାର୍ଦ୍ଦନ—ଆପ୍ପା ତୋର ଅଛନାରେ ?

ନିତ୍ୟାନନ୍ଦ—ଆପ୍ପା ?

ଜନାର୍ଦ୍ଦନ—ତୋ ବୋପ୍ପାରେ !

ନିତ୍ୟାନନ୍ଦ—ଓ ବାବା, ଓସ୍ତାନ୍···

ଜନାର୍ଦ୍ଦନ—ବେଇଲେ···

ନିତ୍ୟାନନ୍ଦ—ସେ ମିଳୁନାହାନ୍ତି ।

ଜନାର୍ଦ୍ଦନ—ବାପ୍ପୁ ମାଢ଼ିଗଲକରେ ?

ନିତ୍ୟାନନ୍ଦ—ଏଁ, କଣ କହୁଲ୍ ?

ଜନାର୍ଦ୍ଦନ—ସ୍କୁଲରେ ରୁ ପାଇଁରେ । ଜପ ପେଟ୍ରେ—ତୋ ପାଡରେ ଗଲେ ବୁଝିଆ ହେଇଯିବ ।

ନିତ୍ୟାନନ୍ଦ—ରେଗିଆ ହୁ.

ଜନାର୍ଦ୍ଦନ—ଆବ୍ବା—କ୍ୟାଣ ପାଇଁ ପାଣ୍ଟି କରୁଚୁ ? ସ୍କୁଲରେ···(ପ୍ରସ୍ଥାନ)

ଘନେଶ—(ପ୍ରବେଶ କରି) ବଣିଆ, ଧରଣୀ ଏ ଯାଏ ଆସିଲାନି ?

ବଣିଆ—ମୁଁ ପାଞ୍ଚ ଥରଅର ଯାଇ ତାଙ୍କ ଘରୁ ଫେରି ଆସିଲିଣି—କେହି କହୁ ତାଙ୍କ କଥା କହିପାରୁନାହାନ୍ତି । କାଲି ରାତିଠୁଁ ସେ ବୁଝାଇ ଯାଇଚନ୍ତି ଯେ ଏ ଯାଏ ଫେରିନାହାନ୍ତି ।

ଘନେଶ—ଏ ବଡ଼ ଅନ୍ୟାୟ କଥା । ମୋର ଅନ୍ନରେ ପ୍ରତିପାଳିତ ହୋଇ ଧରଣୀ ଆଜି ଏପରି ଦିନରେ ଆସିବ ନାହିଁ !

( ନିତ୍ୟାନନ୍ଦର ପ୍ରବେଶ )

ନତ୍ୟାନନ୍ଦ ! ତୁମ ବାପା କାହାନ୍ତି ? ଏଠି ଏତେ ସବୁ କାମ ହବ କମିତ ?

ନତ୍ୟାନନ୍ଦ—ହଜୁର୍ ! ସେ ଯାଇ ମଙ୍ଗଳ ଗ୍ରହରେ କି ଚନ୍ଦ୍ର ମଣ୍ଡଳରେ ଲଗିଦେଣି ।

ଗଣେଶ—ହ୍ୱାଟ୍ ! ତେଏ ତୁମେ କହୁଚ ?

ନତ୍ୟାନନ୍ଦ—ସେ ନ ଆସନ୍ତୁ—ମୁଁ ଅଛୁ ସାର୍ ! ସବୁ କାମ ତୁଲେଇନେବି ।

(ଏଇ ସମୟରେ ବାହାରୁ ବେଣ୍ଡବାଜା ଶୁଣାଗଲା—ପାର୍ଟି—ବର ଆସିଗଲେ । ଗଣେଶ ବାବୁ ଯାଇ ବରବେଶରେ ଆସୁଥିବା ଅମରଙ୍କୁ ପାଛୋଟି ଆଣିଲେ । )

ନତ୍ୟାନନ୍ଦ—ଏ ବା—ବା—ବାଣ ! ଆସନ୍ତୁ ସାର୍…

ଗଣେଶ—ଆଇ ଫୁଲ୍‌ଫିଲ୍ ମାଇଁ ପ୍ଲେଜ୍ ଟୁଡେ—( I fulfil my pledge today ) ଅମର ! ତୁମର ବାବା ସ୍ୱର୍ଗପୁରରେ ଆଜ ନିଶ୍ଚୟ ତୁମକୁ ଆଶୀର୍ବାଦ କରିବେ । ଅଉଥ…ସେ ବ ଖୁବ୍ ଖୁସି ହେବ । ତୁମେ ମତେ ଆଉ 'ସାର୍' ବୋଲି ଡାକିପାରିବନି—ଡାକିବ ବାବା—ବାବା !

( ଅମରଙ୍କୁ ଭିତରକୁ ନେଇଯାଉଥିଲେ )

ନତ୍ୟାନନ୍ଦ--ମାଇଁ ସ୍ୱିଟେଷ୍ଟ ପ୍ରେଜେଣ୍ଟେସନ୍—( My sweetest presentation )

(ଫୁଲଟିଏ ଅମରଙ୍କୁ ଦେଲା)

ଅମର—ତୁମେ ହସର ଏକ ବନ୍ୟା ନତ୍ୟାନନ୍ଦ ! ଇଉ ଆର୍ ଏ ଗ୍ରେଟ୍ ଜୟ ! (You are a great joy)

( ସମପ୍ରେ ସିବା ସମୟରେ ବାହାରୁ ସମସେର୍ ଖୁବ୍ ଜୋରରେ 'ଏ ସାଦ ବନ୍ଦ୍ କର' କହି ଦୌଡ଼ ଦୌଡ଼ ପ୍ରବେଶକଲେ । କିଛି ସମୟ ପରେ ଅମିନା ଆସିଲା । )

ସମସେର୍—ବାବୁ !

ଅରୁଣା—ହଁ ବାପା, ତୁମ ଅରୁ ତୁମର ପାଖରେ । ମୁଁ ରାସ୍ତାର ଗୋଟିଏ ନାଚବାଲୀ ଝିଅ ଅହଲ୍ୟା । ଧରଣୀମହାପାତ୍ର ମତେ ଟଙ୍କା ଲୋଭରେ ଏଠି ଆଣି ରଖିଥିଲେ । ତୁମ ଅରୁକୁ ତୁମ କୋଳକୁ ନିଅ ବାପା !

ଦୀନେଶ—ଅରୁ ! ମା !

ଅରୁଣା—ବାପା ! (ଦୁଇଜଣଙ୍କ ମିଳନରେ ମୁଗ୍ଧ ହୋଇ ଅପରୂପ ଦୃଶ୍ୟ— ଅହଲ୍ୟା ଚାଲିଯାଉଥିଲା)

ଦୀନେଶ—ତୁ ପୁଣି କୁଆଡ଼େ ଯାଉଛୁ ମା ?

ଅହଲ୍ୟା—ମୁଁ ରାସ୍ତାର ଗୋଟିଏ ନାଚବାଲୀ ଝିଅ ପୁଣି ଚାଲିଯିବ ସେଇ ରାସ୍ତାକୁ ।

ଦୀନେଶ—ତା' କଣ ହୋଇପାରେ ମା ? ଅରୁର ଅଭାବ ତୁ ପୂରଣ କରିଥିଲୁ— ତୁ କୁଆଡ଼େ ଯିବୁ ମା ? ଆଜିଠୁ ମୋର ଦୁଇଟି ସନ୍ତାନ । ଆସ, ଘରକୁ ଆସ । (ଚାଲିଗଲେ)

ଅହଲ୍ୟା—(ଅମରକୁ) ଏ, ସେମିତି ଚାହିଁକି କେଉଁଠି ଛିଡ଼ାହୋଇଛ—ଭିତରକୁ ଆସ ! (ଅମର ସହିତ ଅରୁଣାର ହାତ ମିଳାଇଦେଲ । ଅମର ଓ ଅରୁଣା ସମସେରଠୁ ଆଶୀର୍ବାଦ ନେଇ ଚାଲିଗଲେ ।)

ସମସେର୍—ହେ ଅଲ୍ଲା—ହେ ଖୋଦା ! ବେଟୀ ଅମୀନା ! ଅମୀନା !! ମତେ ତୋ ପାଖକୁ ନେଇଯାରେ ବେଟୀ—ଅ-ମୀ-ନା !!

(ସମସେର୍ ମୁହଁରେ ମୃତ୍ୟୁର ଛାୟା ହୋଇ ଦୂରକୁ ଅନାଇ [illegible]— ଦୂରରେ ନଦୀ—ଗୋଟାଏ ପାଖରେ ଦେବମନ୍ଦିର—ଅପର ପାଖରେ ମସ୍‌ଜିଦ୍—ଦୁଇହାତ ପ୍ରସାରି ସେ ଆଗେଇଯାଉଥିଲା । ଦୂରରୁ ଭାସି ଆସୁଥିଲା ଚନ୍ଦ୍ରାଲୋକିତ ସନ୍ଧ୍ୟାରେ—

'ଜଗନ୍ନାଥ ସ୍ୱାମୀ ନୟନପଥଗାମୀ ଭବତୁ ମେ…

ଅଲ୍ଲା ହୋ ଆକବର….

[ ଯବନିକା ପତନ ]

